# ସୂଚନା

ପୂଜ୍ୟପାଦ ସ୍ୱର୍ଗତ ପିତା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ରଚିତ କାବ୍ୟ, କବିତା, ନାଟକ, କ୍ଷୁଦ୍ରଗଳ୍ପ, ଉପନ୍ୟାସ, ରାଜନୈତିକ ଲେଖା ଓ ଆତ୍ମଚରିତ ଗ୍ରନ୍ଥାବଳୀ ଆକାରରେ ସଂପାଦନା କରାଯାଉ-ଅଛି । ବସ୍ତୁତଃ ପିତା ଜୀବିତ ଥିବାବେଳେ ରାଜନୀତିର ନିଗଡ଼-ବେଷ୍ଟନୀ ମଧ୍ୟରେ ରହି ସୁଦ୍ଧା ଏ ଦିଗରେ କେତେଦୂର ଅଗ୍ରସର ହୋଇଥିଲେ । ସେ ନିଜର ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କରି କେତେକ ଅଂଶ ପ୍ରକାଶନ ନିମିତ୍ତ ସଜ୍ଜିତ କରି ରଖିଥିଲେ । ଆକସ୍ମିକ ଭାବରେ ରୋଗାକ୍ରାନ୍ତ ହେବାରୁ ସଜ୍ଜିତ ଅଂଶର ପ୍ରକାଶନ ଘଟି ...ଲା ନାହିଁ । ପୁଣି ପରେ ପରେ ତାଙ୍କର ମୃତ୍ୟୁ ଘଟିବାରୁ ...ାଶନରେ ବହୁ ବିଳମ୍ବ ଘଟିଅଛି । ଅନ୍ୟାନ୍ୟ ସମସ୍ତ ରଚନାକୁ ...ସେ ସଜ୍ଜିତ କରି ପାରିନାହାନ୍ତି । ସେଗୁଡ଼ିକର ସାଜସଜ୍ଜା ଓ ସଂକଳନ କାର୍ଯ୍ୟ ଚାଲିଛି । ତଥାପି ଖଣ୍ଡିଏ ଖଣ୍ଡିଏ କରି ସଂପାଦନା କରିବା ସଙ୍ଗେ ସଂପୂର୍ଣ୍ଣ ଗ୍ରନ୍ଥାବଳୀ ପ୍ରକାଶ କରିବା ସହଜସାଧ୍ୟ ମନେହେଉଛି । ସେହି ଦୃଷ୍ଟିରୁ ଏହି 'ଗୀତଗୁଚ୍ଛ' ଗ୍ରନ୍ଥାବଳୀ ସଂକଳନ ଦିଗରେ ପ୍ରଥମ ଉଦ୍ୟମ ।

ବିନୀତ

ସଂକଳକ

# ସୂଚିପତ୍ର

# ଜନ୍ମଭୂମି

ଜନମଭୂମି ଯେ                ମାଟି ପଥରର
        ଜନନୀଙ୍କ ବଳ ବସ୍ତୁ;
ସେ ଜନମଭୂମି                ସେବା ଯେ କରଇ
        ନରଜନ୍ମ ଧନ୍ୟ ତାର ।

ହ୍ରଦ ନଦୀ ବନ                ପ୍ରାନ୍ତର ପର୍ବତ—
        ଜଡ଼ ଏ ସକଳ ଯେତେ,
ପ୍ରତି ସ୍ଥାଣେ ବହେ                ଜନନୀ ରକତ
        ଜୀବନ୍ତ ପରାୟେ ସତେ ।

ସରଗୁଁ ବଳ ଏ                ଜନମଭୂମିର
        ହେଲେ ତିଳେ ଅପମାନ,
ଥିଲା ଦିନ ଯେବେ                ଉଠୁଥିଲେ ଗର୍ଜି
        କୋଟି କୋଟି ତା ସନ୍ତାନ ।

ଏ ଜନମଭୂମି ଗଉରବ ଶିଖ
ଅଟଳ ରଖିବା ପାଇଁ,
ସମର ପ୍ରାଙ୍ଗଣେ ଦେଉଥିଲେ ପ୍ରାଣ
ଶତ ଲକ୍ଷ ଦେଶ ଭାଇ ।

ଅଛୁ ସେହି ଭୂଇଁ, କେଜାଣେ କପାଇଁ
ହୃଦୟେ ନାହିଁ ସେ ଟାଣ,
ଜନମୀ ଦଇନେ କପଟ ସନ୍ତାନେ
ରକ୍ଷିଛନ୍ତି ଧରି ପ୍ରାଣ ।

କି ସୁଖ ଜୀବନେ, ଚିର ଅପମାନ
ହେବ ଯେବେ ଭାଗ୍ୟେ ଲେଖା ?
ମାଆଁ ବୋଲି ଥରେ ଉଠ, ହେ ସୋଦରେ,
ମାଆର ଲଭିବ ଦେଖା ।



# ରାଜାଙ୍କ ମାଂସ ଦାନ

କେତୁଶତ ବର୍ଷ ପୂର୍ବେ ଏ ପୁଣ୍ୟ ଭାରତେ,
ଯଦୁପତି ଉଶୀନର ପ୍ରଖ୍ୟାତ ଜଗତେ ।
ଧରି ରାଜଦଣ୍ଡ କରେ କରନ୍ତି ଶାସନ,
ବହି ସ୍ନେହ ପ୍ରଜାଗଣେ ପୁତ୍ର କନ୍ୟା ସମ ।
ନ୍ୟାୟେ ସ୍ୱୟଂ ବୃହସ୍ପତି ନୃପ ଶିରୋମଣି,
ଦୟାର ସାକ୍ଷାତ ମୂର୍ତ୍ତି, ସାରଲ୍ୟେ ଅଶନ ।

ଧର୍ମରକ୍ଷା ଲାଗି ଦିନେ ଉଶୀନର ରାଜ୍ୟ,
ଅମାତ୍ୟ ଅମଲା ସହ ଲିପ୍ତ ରାଜକାର୍ଯ୍ୟ;
ଆସିଲା ସହସା ଶୂନ୍ୟୁ କପୋତ ସେକାଳେ,
କହିଲା, "ଶ୍ରୀପଦେ ଦିଅ ଶରଣ ଏ ଘୁଟେର;
ପଛେ ଗୋଡ଼ାଇଛି ଶ୍ୟେନ, ଆସିବ ଏକ୍ଷଣି,
ମାରି ପ୍ରାଣେ ହତଭାଗ୍ୟେ ଖାଇବ, ନୃମଣି ।"

ନସରୁଁ ମୁଖୁ ତା କଥା, ଆସିଲା ସଞ୍ଚାଣ;
କହିଲା, "ମୋ ଖାଦ୍ୟ ମୋତେ ଦିଅ ନରଗଣ !
କରେ ମୁହିଁ ପକ୍ଷୀ ରାଜ୍ୟ ରାଜତ୍ୱ ଗଗନେ,
ଯେତେବେ ଯାକୁ ପାଏ, ଖାଏ ବୁଭୁକ୍ଷା ମେଣ୍ଟନେ ।
ହସ୍ତକ୍ଷେପ ମୋ'ଶାସନେ ନକର, ରାଜନ;
ଛାଡ଼ିଦିଅ କପୋତକୁ, ଥାଏ ମୁଁ ବଦନ ।"

ଶୁଣି ଶ୍ୟେନ ଯୁକ୍ତି, ଶିବି ହୋଇଲେ କାତର,
ତେଜି କି ଆଶ୍ରିତେ ଦେବେ ନୃପ ଉଶୀନର ?
କହିଲେ, "ସଞ୍ଚାଣ, କ୍ଷୁଧା ମେଣ୍ଟାଇବ ଶିବି;
କ୍ଷୁଧାଗ୍ନି କି ନ ଶମିବ ଏ କପୋତ ବିନା ?
ପ୍ରଚୁର ମାଂସ ମୁଁ ତୁମ୍ଭ ଦେଉଅଛି ଆଣି,
ବଞ୍ଚାଅ ଆଜ ହେ ପ୍ରାଣେ ଏ ନିଷ୍ପାପ ପ୍ରାଣୀ ।"

ଶୁଣି ତା ସଞ୍ଚାଣ ବେଗେ କହେ ଯୁକ୍ତି ଛଳେ,
"ଦୟାବନ୍ତ ବାନା କାହିଁ ଉଡ଼ାଅ ଭୂତଳେ ?
ଏକ ଜୀବେ ବଞ୍ଚାଇବ, ଅନ୍ୟ ଜୀବ ମାରି;
କି ପୁଣ୍ୟ ଅର୍ଜିବ ବୋଲ ଏ କପୋତ ତାରି ?
ବଢ଼ିଛି ରାଜସ ଗୁଣ, ରାଜନ ଅନ୍ତରେ;
ତହୁଁ ଯାଚ ଆନ ମାଂସ କପୋତ ବଦଳେ ।"

ରାଜସୁଁ ସାତ୍ତ୍ୱିକ ଗୁଣେ ବଡ଼ ଯଦୁପତି,
କହିଲେ, "ସଞ୍ଚାଣ, ଆଜ ମୁହିଁ ତୁଷ୍ଟମତି ।
ମାପି ତୁଳାଯନ୍ତ୍ରେ ଦେବି ମୋ ଦେହୁ ପିଶିତ,
କପୋତର ଓଜନମତେ ହେବ, ବୁଭୁକ୍ଷିତ !
ତଉଲେ ଓଜନ ଯେତେ, ଦେବି ମୁହିଁ ତୁଳି
ଆଣାଉଛି ତୁଳାଯନ୍ତ୍ର, ସୁଶାଣିତ କ୍ଷୁର ।"

ତୁଳାଦଣ୍ଡ ଏକପାର୍ଶ୍ୱେ କପୋତେ ବସାଇ,
ନିଜ ଦେହୁ ମାଂସ ଖଣ୍ଡ କାଟି ନିରସାଇ,
ଥାପି ଅନ୍ୟପାର୍ଶ୍ୱେ ତାକୁ, ଧରନ୍ତେ ସେ ଦଣ୍ଡ,
ହୋଇଲା କପୋତ ଭାରି, ଲଘୁ ମାଂସ ଖଣ୍ଡ ।

କାଟିଲେ ନୃପତି ଉରୁ ଆଉ ଖଣ୍ଡେ ମାଂସ,
ରକ୍ତନଦୀ ବହେସିନା, ଘର ଅନ୍ୟପାର୍ଶ୍ୱ ।

ପଡ଼ିଗଲା ରାଜସଭା ମଧ୍ୟେ ହାହାକାର,
ନଶୁଣିଲେ ନୃପ କିନ୍ତୁ, ନକଲେ ବସ୍ତୁର;
ତୁଳାଯନ୍ତ୍ରେ ବସିଗଲେ ସ୍ୱମାଂସ ସହିତ,
କ୍ଷୁଧାର୍ତ୍ତ ସଞ୍ଚାଣ ଦେଖି ଅତି ଆଚମ୍ବିତ ।
ଜୀବନରେ କରିବାକୁ ପ୍ରତ୍ୟକ୍ଷେ ପରୀକ୍ଷା,
ଇନ୍ଦ୍ର, ଅଗ୍ନି ବହିଥିଲେ ଏହି କୂଟ ଦୀକ୍ଷା ।

ସେ ପରୀକ୍ଷା କ୍ଷେତ୍ରେ ଇନ୍ଦ୍ର ହେଲେ ପରାଭୂତ,
ଲଭିଲେ ବିଜୟ ଠିକେ ଯଦୁକୁଳ ସୁତ ।
ରାଜସଭା ଶିରେ ଇନ୍ଦ୍ର କରି ପୁଷ୍ପବୃଷ୍ଟି,
କହିଲେ, "ରାଜନ, ଆଜି ଧନ୍ୟ ହେଲା ସୃଷ୍ଟି ।
ଜୀବେ ଏତେ ଦୟା ଅହା ବହିଛ ହୃଦୟେ !
ଗରୁଡ଼ାଣ ରକ୍ଷ ଅଛ ନିଜ ତନୁମୟେ ।"



# ଗୋପାଳ

ଘରକୁ ଗୋପାଳ ଏକମାତ୍ର ପୁଅ
ଦରିଦ୍ରପଣର ଅନ୍ଧଲଙ୍ଗଡ଼,
ଦୁଇଦିନେ ଥରେ ହୁଏ ଅନ୍ନ ମୁଖେ
ବାକି ବେଳେ ଖାଏ ହୁଡ଼ୁମ୍ବ ମୁଡ଼ି ।

ଘରେ ଆସି ନିତି ଠାଏ ବସିବାକୁ
ଫୁରୁସତ ନାନା ଜଞ୍ଜାଳେ କାହିଁ ?
ଷଷ୍ଠୀ-ବ୍ରତ-ଶ୍ରାଦ୍ଧ- ଭୋଠ ଜନ୍ତାଳେ ସେ
ନ ରହିଲେ କାମ ଉଠଇ ନାହିଁ ।

କାହା ଘରେ ରୋଗୀ ପଡିଥିଲେ ଶେଯେ,
ତା ଘନେ କେ ସେବା କରିବ ଆଉ ?
ଦୋକାନୁଁ ସଉଦା ନ ଆସିଲେ କା'ର,
ଗୋପାଳ ତକ୍ଷଣେ ଯୁଟଇ ତହିଁ ।

କା ଗଛୁଁ ନଡ଼ିଆ ତୋଳା ନୋହୁଥିଲେ,
ଚଢ଼େ ବିନା ଛନ୍ଦେ ଗଛେ ଗୋପାଳ;

ଜା ଗାଣ୍ଠି ଘରକୁ ଚଳି ନ ଫେରିଲେ;
ତାର ବନ୍ଧୁଯାଏ ଦେଡ଼ପା ଝୁଲ ।

କେ ଯଦ ମୁଣ୍ଡାଇ ବୋଝ ବୋହିବାକୁ
ବୁଲି ଖୋଜ ଗ୍ରାମେ ନ ପାଏ ଲୋକ,
ଭଡ଼ ଭରି ଅଣ୍ଟା ବାହାରେ ଗୋପାଳ,
ମନେ ତା ନ ପଡ଼େ ଶୋଷ କି ଭୋକ ।

ଝୁଧାଉଁ ବୁଲିଲେ ମାଗି ଗାଆଁ ବାଣ୍ଟେ,
ଧମା ସିନା ମୁହଁ ବଅନ୍ତୁ ମୋଡ଼,
ଘରୁ ଚୁଡ଼ା ମୁଢ଼ି ଯା ପାଏ ହାଜିଁଟି
ବଏ ଆଣି ସେତୁ ତା ହାତେ ଲୋଡ଼ ।

ଗ୍ରାମେ ଯେବେ ଆସେ ଗୁଡ଼ିଆ ପସରା,
ମୁଆଁ ପାଇଁ କରେ ହଠ ଜା ପିଲା,
ଉଧାରେ ପଇସା ଆଣି ସେ ଗୋପାଳ,
କିଣି ମୁଆଁ ତାକୁ କରଇ ଖୁସି ।

ହଣା ମରା କାଳ୍ପି ଲାଗିଲେ, ଧାଏଁ ସେ,
ଦୁଇଦଳ ମଧ୍ୟେ ପୁଅଇ ଠିଆ;
ତା ମୁଣ୍ଡେ ପାହାର ବସେ ଦୁଇପକ୍ଷୁଁ
ମାନ ନଭୁଯାଏ କଳହ ନିଆଁ ।

କେହୁ ଯଦ କରି ଦୋଷ ଅପରାଧ
ଭୟ ହୁଏ ଦଣ୍ଡ ଭୋଗିବା ପାଇଁ,
ତେଣିପଡ଼ ଆଗେ କହଇ ଗୋପାଳ,
“ମୁଁ ଦୋଷ କରିଛି; ସେ କରିନାହିଁ ।”

ଘଟରେ କାର ନଆଁ ଲାଗନ୍ତେ, ପ୍ରଥମେ
ବୁଜ ଆଖି ସେଥୁ ଚଢ଼ଇ ଗୃଲେ;
ହାତ ମୁଦଁ ଛୋଡ଼ ଶୁଏ ଶେଯେ ପିନା,
ଚଗ୍ଲୁଏ ନାହିଁ ସେ ଆପଦକାଳେ ।

ଘରେ ବାପା ମାଆ କାନ୍ଦ ଗଡ଼ୁଥାନ୍ତି,
ହାତକୁ ନୋହିଲା ଦହାତ ଖେଳୁ,
ଚଜତ ବରଷୁଁ ଗୃଳଣ ପାଖାଏ,
ବଳ କମେ ଖସି ଅସିଲା ଦେହୁଁ ।

ପର ମନ୍ଦ ଚିନ୍ତା କିସ ସେ ନ ଜାଣେ,
ପର ଛିଦ୍ର ଭୁଣ୍ଡେ ମ ଧରେ କନେ,
ତା ସାଗ ଜୀବନେ ଶ୍ରେଷ୍ଠ ବଡ଼ କାମ
କର ନାହିଁ ପର କଲ୍ୟାଣ କନେ ।

ଶେଷେ ଯେବେ ମଣ୍ଡି ଗୃଳାଲା ଗୋପାଳ,
ଗ୍ରାମସାର ଆଜ ନୋହିଲା ଗୃହିଁ,
'ଆହା ଆହା' ଭୁଣ୍ଡି ନ ସରେ କାହାର,
ଲୁହ କା ନୟନ ଶୁଟଇ ନାହିଁ ।



# ମହେନ୍ଦ୍ର ତନୟା

ଉତ୍କଳ ମଣ୍ଡଳେ          ମହେନ୍ଦ୍ର ପର୍ବତ
          ସକଳ ପର୍ବତୁଁ ବଡ଼,
ଏପାଖେ ରହିଛି          ପାଘଳା ସଇଜ
          ସେପାଖେ ମଞ୍ଜୁଷା ଗଡ଼ ।
ଭେଦନ୍ତି ଆକାଶ—          ଶିଖ ତାର, ତହିଁ
          ଗଲେ ମନେ ଜାଗେ ଭୟ;
ଲକ୍ଷ ପର୍ବତ          ମଧ୍ୟେ ସେତ ଏକା
          ଉତ୍କଳର ହିମାଳୟ ।
ଶାସ୍ତ୍ରେ ପଢ଼ ଅଛି,          ଶିବ ଶିରୁ ମର୍ତ୍ତ୍ୟେ
          ଯାହ୍ନବୀ ଯାଇଛି ବହି;
ତେସନେ ବହଇ          ମହେନ୍ଦ୍ର ଶିଖରୁ
          ମହେନ୍ଦ୍ର ତନୟା ନଈ ।
ଗଛଲତା ଘାସ          ଢଳେ କି ଶ୍ୟାମଳ
          ସେ ମହେନ୍ଦ୍ର ପରବତେ,
ତା ନଦେହ ମହେନ୍ଦ୍ର-          ତନୟା ଧାଉଛି
          ରୂପା ଉତ୍ତରୀ କି ପରେ !
କଳ ଗୀତେ ସୁଖେ          ବହଇ ଝରଣା
          ପଥରୁ ପଥରେ ଡେଇଁ,
ଶୁଣିତା ତଳରେ          କାନନ କୁରଙ୍ଗେ
          ନାଚରୁ ଉଠନ୍ତି ଡେଇଁ ।

କାହିଁ ଜମି ପାଣି　　　ଖେଳଇ ଉର୍ମିଷ,
ଲଙ୍ଘେ ଶିଳା ବାଡ଼ କାହିଁ;
କାହିଁ ତରତରେ　　　ଚଢ଼ ଗୁଳ୍ମ ଯାଏ,
ମୁହୂର୍ତ୍ତେ ରହଇ ନାହିଁ ।
ଆଉ କାହିଁ ପୁଣି　　　ଖସି ବେଗେ ଢଳେ
ରଚଇ ପ୍ରପାତ ଗୋଟି,
ତହୁଁ ବହି ପୁଣି,　　　ଚନ୍ଦ୍ରଲତା ମୂଳେ
ଯାଏ କଳକଳେ ଲୋଟି ।
ଆଇ ଯେବେ ଶେଷେ　　　ଗିରି ପାଦଦେଶେ
ମିଳଇ ଛଟିମା ପୁଣି,
ଧୀରେ ବହି ଚଳେ　　　କଳ ଗୀତ ସାରି,
ଭୂରିତେ ହୁଅଇ ଭିନ୍ନ ।
ଶିଶୁସମ ସାନ　　　ମହେନ୍ଦ୍ର ତନୟା
କେତେ ବଡ଼ ହୁଏ ବଡ଼ି,
ଏ କୂଳୁ ସେ କୂଳ　　　ପାଏ ନାହିଁ ଆଖି,
ବଢ଼ିମା ନୂହଇ କଳ ।
ତା ସେନ କଅନ୍ତି　　　ସାରା ରାଜ୍ୟ ଜନ
ପିଅନ୍ତି ଅମୃତ ତାତ,
କେତେ ଶସ୍ୟସ୍ୱିତ　　　ନ ସାଧି ପାରଇ
ପବାହର ବର୍ଣ୍ଣା ଧାର !
ସ୍ୱଦେଶକୁ ଯାଉଛୁ　　　ବହି ସେ ବିଦେଶେ
ପରେ ବିତରୁଛୁ ଦୟା,
ହୂନ ଗୁଣ ବେନ　　　ସମ୍ପଦେ ଭୁତଳେ
ବଡ଼ ମହେନ୍ଦ୍ର ତନୟା ।

---

# ସାୟାହ୍ନ ଭାବନା

ଲୁଚିଲା ତପନ ଯାଇ ଅସ୍ତାଚଳ ଶିରେ,
ଆସଇ ପସରୀ ଦିଗୁଁ ମାଡ଼ି ତମ ଧୀରେ ।
ପ୍ରତୀଚୀ ଗଗନ ପଟ ଧରଇ ପାଟଳ ,
ଦିବସର ଶେଷ ଶିଖ ସେ ତ ସେ ଦିନର ।

ସାରି ଦିନେ ହଳକାମ, ବେଗେ ଚଷା ଭାଇ
ଫେରଇ ହର୍ଷରେ ଏବେ ସୁରେ ଗୀତ ଗାଇ ।
ଘରେ ବାଟ୍ଟୁ ପାଛୋନ୍ତି ମା ନେବେଟି ଆଦରେ,
ବାଡ଼ି ଶାଗ ଜାଉ ସ୍ନେହେ ଖୋଇବେ କୁମରେ ।

ହମ୍ବାରବେ ଗୋରୁ ଗୋଠ ଯାଆନ୍ତି ଲେଉଟି,
ବେକ-ଘଣ୍ଟି ସ୍ୱନ ଜଗେ ଯାଉଅଛି ଉଠି ।
ବନସାରା ବନ୍ଧାଛନ୍ତି ଗୁହାଳେ ବାଛୁରି,
ଘରେ ପିଆଇବେ ସ୍ତନ ଦୁଅନ୍ତୁ କାଞ୍ଚଳ ।

କାଆ ଘନ ରଙ୍ଗେ କୁଆ ଚଲ୍ ଚଲ ଝଙ୍କ,
ବ୍ୟୋମ ବକ୍ଷେ ମାଂଡ ପାଂଜ ଅନ୍ଧନ୍ତ ବାହୁଡ଼ି ।

ବହଇ ଚଟ୍ଟିମାସୁଣୀ କଳ କଳ ସ୍ରୋତେ,
କହଇ, "ଯିବି ମୁଁ ଭ୍ରମି ପାରାବାର ପାଶେ ।
ଢବସପାକ ମୁଁ ଯାକୁ ବନ୍ଧିଥିଲି ବୁକେ,
କି ଦୂର ଗଇଲେ ସେ ତ ଭୁଲିଗଲା ସୁଖେ ।
ଯେନ୍ତେକାଳ ପୁଣି ସେହୁ ଲେଉଟିବ ନାହିଁ,
ଏ ପ୍ରାଣେ କି କାର୍ଯ୍ୟ ମୋର; ବଞ୍ଚିବି କାହାଇଁ ?
ଅନ୍ଧାରେ ରଖିବ ରୂପ ଲୁଚଇ ଉଦାସେ,
ଖାରଫୁଲେ ନ ଛୋଟିବ ମୋ ଜଳର ସ୍ରୋତେ ।"

ଘେନଲି ପଗଣେ ସବୁ ବସି ମୁଁ କାନ୍ତାରେ,
ଅନ୍ଧାର ଦୋଇଲା ଜଣି ଢଳ ପଦାମାଳେ ॥
କମଳ କଳିକା ଦେଲା ମୁଦି ନେତ୍ର କ୍ରମେ,
ଗୁଞ୍ଜି ଗୀତ ମଧୁମାଛି ଗାଇଲେ ସମ୍ଭ୍ରମେ ।

ବସିଥିଲି ଏକା ମୁହିଁ ଆସି ନଦୀତଟେ,
ସଙ୍ଗ ସାଥି ଜଣେ ହେଲେ ମୋ ନଥିଲେ ସଙ୍ଗତେ ।
ତେବେ, ମୁହିଁ ନିର୍ଜନତା ନଥିଲି ତ ଜାଣି;
ସାଥି ଥିଲେ ଯେତେ ଧରା-ନଭ-ନୀର ପ୍ରାଣୀ ।
ସରବେ ଏବେ ଯେ ଗଲେ ପଳାଇ ସାୟାହ୍ନେ,
ତେଜି ମୋତେ ଏକାକିଟି ଆକୁଳ ପବନେ;
ବିଜନେ ଏକା ମୁଁ ଆହା ନିରଶ ଅନ୍ତରେ,
ଏ ଘୋର ବନସ୍ତ ଦେଉଁଶ ବସିଛି କାତରେ ।

ଯିବ ଏବେ ଘରେ, କାଲି ଲେଉଟିବା ପାଇଁ,
ଝକାଶିଆ ତେବେ ପୁଣି ଦେଖିବ ଅନାଇ ।
ଜ ଜଗତ ଦୃଶ୍ୟ ବନ୍ଧ କରିଛୁ ଭିଆଣ,
କ୍ଷଣେ ଯେ, ଯେ ରୂପ ଧରେ ପର କ୍ଷଣେ ଆନ ।
ପଲକେ ଯେ ନୃପ ଥାଇ ପଲକେ ଭିକାରି,
ଆଜ ଯେ ସୁନ୍ଦର ଅତି, କୁତ୍ସିତ ସେ କାଲି

ଏ ଏକା ପ୍ରକୃତି ରୂପ ଅଟେ ଜଗତର,
ସୁଖଦୁଃଖ, ଭଲମନ୍ଦ ସମାନ ସକଳ ।
ସୁଖ ଅଛି, ତହୁଁ ଦୁଃଖ ରହିଛି ତା ପାଶେ,
ସମ୍ଭବ ପାରଇ ଭଲ ମନ୍ଦର ସକାଶେ ।
ଖାଲି ଭଲେ, ଖାଲି ସୁଖେ ଅସମ୍ଭବ ମଣି,
ଦୁଃଖ ମୂଳାଧାରେ ଦିନା ପାରେ ସୁଖ ରହି ।

ଆସ ସଖି, ଅନ୍ଧକାରେ ଡାକେ ବନ୍ଧୁ ମୋତେ,
ତେବେ ମୁଁ ଲଭିବ ଢବା କାଳ ମହାସ୍ରୋତେ ।



# କବି

ଜଗତେ ଅତୁଲ୍ୟ ବୋଲାଅ, କବି ହେ,
ଏ ଅମର ଖେଳାପେ ବଡ଼,
ଥାପି ମର୍ତ୍ତ୍ୟେ ଏକ ମଧୁର, ସ୍ୱରଗେ
ବତାଇ ପାର ଅପର ।
ଦର୍ଶନ ବିଜ୍ଞାନ ଜ୍ୟୋତିଷ ଗଣିତ
ରସାୟନ, ଇତିହାସ,
କି ଅଛି ଭୂତଳେ ବିଦ୍ୟା ଏଭଳି ହେ,
ତୁମେ ନ କରିଛ ବଶ ?
ସକଳ ବିଷୟେ ଗୁନ୍ଥି ପାର ତବ
ଦୁର୍ଜୟ ଲେଖନୀ ହେଲେ,
ବୁଡ଼ି ଯେବେ ଚିନ୍ତ ଅମର ଅଭେଦ୍ୟ
ସୁଗଭୀର ପାରାବାରେ ।
ହସାଅ, କନ୍ଦାଅ ଯେତେବେଳେ ଯାହା
ଇଚ୍ଛାର ଆପଣା ମନେ,
କି ଭାଷା କୁହୁକେ ରଖିଛ ଆବରି
ଜଗତ ଯାବତ ଜନେ !

ଛାୟାରେ ଦେଉଛ        କାୟା ଆଣି କାହୁଁ ?
କାୟାରେ କରୁଛ ଛାୟା,
ମୋହ ବିଜଡ଼ିତ        ମର ନର ପ୍ରାଣୁ
ଲୁଟାଅ ମୋହନ ମାୟା ।
ଭିକାରିରେ ଥାପ        ରାଜ ସିଂହାସନେ,
ରାଜନେ କର ଭିକାରି,
ମରୁ ଦେଶେ ରଚ        ନନ୍ଦନ କାନନ
ନନ୍ଦନେ ପାରଚ ଜାଳି ।
ଜାଣି ମିଛ ବୋଲି        ଭୁଲନ୍ତି ମାନବେ
ଏ କି ମଶ୍ୱରିକା ତୁମେ ?
ମିଛେ ଏ ମରତେ        କରୁଛ ସଜନ୍ତି
ବଶୁ ଆଦରଣ ଭ୍ରମେ ।
ମୁଁ ହେଲେ ନଉନ        ଦୀନ ଅକିଞ୍ଚନ
ଏ ମହା ସଂସାର ଦେଶେ,
ତୁମ ବିମୋହନେ        ନ ଭୁଲି, କହ ହେ,
ରହିବ ମୋ ସ୍ଥାନ କେଣେ ।



# ମାୟାମୃଗ

ପର୍ଣ୍ଣକୁଟୀ ମଧ୍ୟେ  ଅଯୋଧ୍ୟା ନରେଶ
ଦୂର ପଞ୍ଚବଟୀ ବନେ,
ବସି, ହର୍ଷେ ସୀତା  ଲକ୍ଷ୍ମଣ ସଙ୍ଗରେ
ରତ ପ୍ରୀତ ଆଳାପନେ ।
ଆସି ଉଭା କାହୁଁ  ଧାଇଁ ସ୍ୱର୍ଣ୍ଣ ମୃଗ
କୁଟୀର ଦୁଆର ପାଶେ,
ଚଞ୍ଚଳ ଝଟକ  ପ୍ରାପ୍ୟେ ନିମିଷକେ
ଲୁଟିଗଲା ବନବାସେ ।

ଦେଖି ତା ମୂରତି  ନ ପାରିଲେ ରୋକି
ଜନକ ରାଜ ଦୁହିତା,
କହିଲେ, "ସେ ନାଥ  ନ ଆଣିଲେ ଧରି
ଅନ୍ନ ମୋତେ ହେବ ପିତା ।"
ଶୁଣି ରାମ ବେଗେ  ଧନୁଶର ହାତେ
କୁଟୀରୁ ହେଲେ ବାହାର,
ବୁଲି ବନେ ମୃଗେ  କେତେ ତ ଖୋଜିଲେ
ଛୁଇଁ ନ ଦେଖିଲେ ତାର ।

ବନ୍ଧୁ ବନେ, ଗିର— ସଙ୍କଟ ଗିରକ
ଜ୍ୱଳନ୍ତ ଅଯୋଧ ସାଇଁ,
ତେଣେ, ସୀତାସହ ଉଦ୍‌ବିଗ୍ନ ଲକ୍ଷ୍ମଣ
ବାଟ ଉନ୍ମନ୍ତ ଚାହିଁ ।

କେତେବେଳେ ବନୁ ଆସିଲା ଶବଦ
"ଲକ୍ଷ୍ମଣ, ରଖ ଜୀବନ,"
ଶୁଣି କାନେ ସୀତା ପଡ଼ିଲେ ଚମକ
ଅଧୀର ହେଲେ ଲକ୍ଷ୍ମଣ ।
କହିଲେ ସୀତା, "ଏ ଭାଇ କଣ୍ଠ ସ୍ୱର
ଆପଦେ ପଡ଼ିଲେ କାହିଁ,
ଯାଅ ଏ ମୁହୂର୍ତ୍ତେ, ହେ ଲକ୍ଷ୍ମଣ, ତହୁଁ
ଭାଇଙ୍କି ତାରିବା ପାଇଁ ।"
ମନ ନ ମାନିଲା, ତଥାପି ସୌମିତ୍ର
ଚଳିଲେ କୁଟୀର ତେଜ,
ଘୋର ବନେ ସୀତା ରହିଲେ ଏକାକି,
ଚିତ୍ତେ ରାମ ନାମ ହେଜି ।

ଝୁହୁଁ ଝୁହୁଁ ଦ୍ୱାରେ ଆଗତ ଭିକ୍ଷାର୍ଥୀ
ମାଗଇ ଭିକ ଆତୁରେ ,
ପତିବ୍ରତା ସତୀ— କଲ୍ୟାଣ ମନାସି
ଭିକ୍ଷାନ୍ନ ବାଢ଼ିଲେ ଦୂରେ ।
କହିଲା ଭିକ୍ଷାଶୀ, "କରେ ଆଣି ଦେଲେ,
ନେବ ସିନା ମୁଁ ଭିକ,

ପରବାସେ ପାଦ ପକାଇବ, ମୋତେ
ମଣ କ ଏଡ଼େ ନାସ୍ତିକ ?"

ଶଙ୍କେ ଭିକ୍ଷାନ୍ନ ଆଣି, ଦ୍ୱାରଦେଶୁ
ବଢ଼ାଇ ଦେଲେ ମୈଥିଳୀ,
କ ହେଲା ! ଭିକ୍ଷାର୍ଥୀ ପ୍ରକାଶି ସ୍ୱରୂପ
ଧଇଲା ଶ୍ରୀକର ଭିଡ଼ି ।
ଦଶମୁଣ୍ଡ ତାର ବେକ ଉପରକୁ
ବଳକ୍ତ ବଶଇ ଅନ୍ତ,
ଝୁଲଇ କୋଡ଼ିଏ ହାତ ବେକ ପାଶେ,
ଦେଖି, ମୂର୍ଚ୍ଛା ଗଲେ ସତୀ ।

ପୁଷ୍ପକ ରଥ ତା ଥିଲା ପାଶେ, ତାଙ୍କୁ
ବଳେ ସେ ଥାପିଲା ତହିଁ,
ଉଦ୍ଧୂଳିତା ହସ୍ତା ଜାନକୀ ବକଳେ
କାନ୍ଦୁଛନ୍ତି କହିଁ କହିଁ ।
କାହୁଁ ଶ୍ରୀରାମ— ସୌମିତ୍ରି କୁଟୀରେ
ହୋଇଲେ ଚକିତ ଅନ୍ତ,
ତେଣେ, ଉଡ଼େ ରଥେ ସୀତାଙ୍କୁ ବସାଇ
ସେ ଦୈତ୍ୟ ଲଙ୍କା ନୃପତି ।
ସ୍ୱର୍ଣ୍ଣମୃଗ ରୂପେ ମାୟାମୃଗ ଗୋଟି
ପେଷି ଯେ ଥିଲା ରାବଣ,
ସେହି ମାୟା ବଳେ ହରିଲା ସୀତାଙ୍କୁ,
ବୁଝିଲେ ରାମଲକ୍ଷ୍ମଣ ।

# ସଲିଳଧାର *

"ଢାଳିଦିଅ, ଆଗୋ ନାରୀ, ଢାଳିଦିଅ ଜଳ,
ପିପାସାରେ ହୋଇଛି ମୁଁ ଭୃଶେ କାତର ।
ଭ୍ରମି ବନ୍ଧୁର ପନ୍ଥା ବନ ପଦା ପର୍ବତେ,
ବହ୍ନିର ମଣ୍ଡଳ କବା ଲୁହାଇ ପରତେ ।
ଯହିଁ ତହିଁ ବୁଲି ପାଣି ଖୋଜିଲି ବହୁତ,
ନଈ, ନାଳ କାହିଁ ମୋର ହେଲାନାହିଁ ଭେଟ ।
ଯହିଁ ଆଶା କରିଗଲି ପାଇବି ମୁଁ ବୋଲି,
ତହୁଁ ତହୁଁ ନିରାଶାରେ ଆସିଛି ବାହୁଡ଼ି ।
ଢାଳିଦିଅ ଏବେ, ନାରୀ, ଢାଳିଦିଅ ଜଳ,
ପିପାସାରେ ହୋଇଛି ମୁଁ ନିତାନ୍ତ କାତର ।"

ପାଣିର ମିଷ୍ଟତା ଜିଣି ସୁମଧୁରେ ଜାଳି,
ମୃଦୁ କଣ୍ଠ ସ୍ୱରେ ତହୁଁ ଉତ୍ତରିଲା ନାରୀ—

---

* କବି ଥରେ ୧୯୧୪ ମସିହା ଗ୍ରୀଷ୍ମଅବକାଶରେ ସତ୍ୟବାଦୀ ବିଦ୍ୟାଳୟ ନିମନ୍ତେ ଘରତୋଳା କାଠ ଆଣିବାକୁ ମୟୂରଭଞ୍ଜ ଯାଇଥିଲେ । ସେତେବେଳେ ତାଙ୍କୁ କାଠ ଖୋଜିବା ସକାଶେ ଜଙ୍ଗଲରେ ବୁଲିବାକୁ ପଡ଼ିଥିଲା । ଜଣେ ସାନ୍ତାଳ ରମଣୀ ତାଙ୍କୁ ପିଇବାକୁ ପାଣି ଦେଲା ।

"ଏଭଳି ପିପାସା ବୋଲି ନଥିଲି ତ ଜାଣି,
ବଡ଼ ପାତ୍ରେ ଭରି ଆଜ ଆଣିଥାନ୍ତି ପାଣି ।
ଛୁଇରେ ବସିଲଲେକ ଅତି ସୁକୁମାର,
ଏ ଖରାରେ କମା, ବାବୁ, ହୋଇଛ ବାହାର ?"

ସେତିକି କହି ତା ପାଣି ଢାଳୁଥାଏ ନାସ୍ତା,
ଢଳ ଢଳ ଢଳୁଥାଏ ନେତ୍ରେ ଅଶ୍ରୁ ବାରି ।
ନୟନ ବୁହାଣି ତାର ଫେଡ଼ୁଥାଏ ସିନା,
ଅଳପ ଆଣିଛୁ ବୋଲି ମନ କଳପଣା ।
ଢାଳ ପଛୁଁ ପାଣ ତାର ସରିଗଲା ଜଳ,
ଆଉ ଯାଇ ଆଣିବାକୁ ହେଲା ସେ ତିଆର ।

କି କଷ୍ଟ ଗେଧୁବ, ବେଗେ ନ ଆସିଲା ଭଷା,
ବୁଝି ଛ ପାରୁଛି ପେଟ୍ ନେମିଛି ପିପାସା ।
ଛନସ୍ତୁ ବଚନ ଛନ୍ଦୁଁ ଭାଷିଲି ମୁଁ ଧୀରେ,
"ଆଜ ପାଣି ପିଇବା ମୋ ଲେଡ଼ାନାହିଁ ଭଲେ ।
ଏ ଯେ ସାନପାତ୍ରେ ପାଣି ଆଣିଥିଲ ଭରି,
ଛରୁଛୁ କି ଅଛ, ତୃଷା ନ ପାରିଲା ହରି ?
ଯେତେ ପାଣି ବହଇଟି ଏ ବଳଙ୍ଗ ସ୍ରୋତେ,
ସବୁ, ପାତ୍ରେ ଆଣି, ନାରି, ପିଆଇଛ ମୋତେ ।
ଆଜ ଲେଡ଼ାନାହିଁ ମୋର ଲଭେ ପିଇବାର
ଯେତିକି ପିଇଛି ସେତ ହେଲାଣି ଅପାର ।

ଏହିଭଳି ଖରା ନିତି ହେଉଥାଉ ମର୍ତ୍ତ୍ୟେ,
ଏ ବନ ପର୍ବତ ସବୁ ଥାଆନ୍ତୁ ଏମନ୍ତେ ।

ଘୁଇଚଳେ ବସିବାର ସୁକୁମାର ଜନ,
ଢଳୁ ଢଳ ଏ ଘଇଟେ ଆସନ୍ତୁ ଏସନ ।
ବୁଲନ୍ତୁ ଏଭଳି ଶୋଷେ ତୃଷିତ ଢକାଳ,
ଏ ମାଟି କଳଶୁ, ନାଶ ପିଅନ୍ତୁ ସଲିଳ ।
ଶିର ବଚନେ ମନ୍ତ୍ର ନାଳ ଲୋଡ଼ାନାହିଁ, ସନ୍ତ,
ଯେତେବେଳ ଥିବ, ତାତେ ଚୋର ଏ ପାଦଟି ।”



# ଦୁଆର ଆଗରେ

କୁଆଟିଏ ବସି ମୋର ଦୁଆର ଆଗରେ
ରାବୁଥିଲା କେତେ ପରକାରେ;
ମୋର ସବୁ କାମ ଛାଡ଼ି,
କି ଆଶାରେ କାନ ପାରି,
ସେ ରବ ଶୁଣିଲି ତାର ପରାଣ କୁହରେ ।

ସେତ ବଡ଼ ଅମୋହନ ରବ;
ବସନ୍ତର ନୂଆ କୋକିଳ ସଙ୍ଗୀତ,
ଭଅରର ବୀଣା ଝଙ୍କାର ଲଳିତ,
କେବେ ତାକୁ ନାହିଁ ସରି ହେବ ।

ତାର ସେଥି ସରଗ ନିସ୍ୱନେ
ମର ମଧୁ ସମ୍ପଦ ମିଳନେ
କି ଅର୍ଥ ଅଛଇ, କିଛି ନପାରେ ମୁଁ ବୁଝି,
ଖାଲି ସବୁ କାମ ଛାଡ଼ି,
ତା ଡାକକୁ କାନ ଡେରି,
ଲୀନ ହୋଇ ବସି ରହିଥାଏ ମୁଁ ନିମଗ୍ନେ;
ତା ରୂପ ନଦେଖି ପୁଣି, ରବ ତାର ଶୁଣି,
କି ଭାବନା ଭାଳେ ମୁଁ ପରାଣେ ।

କଏ ମୋ ଆସୁଛି ପ୍ରିୟ ପଶୁଶାଳ ଯେତେ,
ସେତ କହୁ ନ କହିଲ
ସେହିପରି ଗାବୁଥିଲା,
ସେ ଗବ ଯେ ଅସମଜା ମୋତେ ।

କୁଆ ବସି ଗାବୁଥାଏ ଦୁଆର ଆଗରେ
ଥରକୁ ଥର ମୁଁ ତାକୁ
ପୂଛୁଥାଏ କହିବାକୁ,
କଏ ସେ ଆସୁଛି ମୋ ଘ ଏ ପଣକୁଟୀରେ ।

ସେ ଯେ କହିଁ କହୁ କହେ ନାହିଁ,
ମୁହିଁ କେତେ କଥା ଭାଙ୍ଗେ ମନେ,
କେତେ ରଙ୍ଗ ପୁଣି ଦେଖଇ ସ୍ୱପନେ,
କେତେ ପ୍ରିୟଜନ ରଙ୍ଗ ଆଣେ କୁଆ ବହି,
ସଭିଏ କୁଟୀରେ ମୋର ଆସୁଛନ୍ତି ଧାଇଁ ।

କୁଆଟି ସେ ନବଗ୍ନି ସେଠାକେ
ଗାବୁଥିଲ ଏତେ ଏଠେ ଭାବେ ।
ତାର ସେହି ଅବୁଝା ବଚନେ
ଏତେ ପ୍ରିୟ ଆସିବାର କହିଲା ତଷଣେ ।
ମୁହିଁ ବସିଅଛି ଗାହିଁ ଅନେମନେ,
ସେ ତା ଟିକ ପଚର ଯୁଗଳେ,
ଉଡ଼ ଖଗେ ଶୁଣିଗଲା ତା ଦୂର ସୁଦେଶେ;
ଟକେଡ଼େ ଗୁଚ୍ଛୁଗର ଲଦ ଫବହେଳେ,
ଗଲା ଆହା ମୋ ଷୁଦ୍ର ଅନ୍ତରେ

# ଋଷିକୂଲ୍ୟାର ମିନତି

ଭୂଧର କନ୍ଦରେ    ଗହନ କାନ୍ତାରେ
ଜନମି ସୁଦୂରେ କାହିଁ,
ଝଲ ଗ୍ରାମ ପଦା    ଚେଜ, ଋଷିକୂଲ୍ୟା
ସବଗେ ଆସିଛୁ ଧାଇଁ ।

ବାଟେ ରୋଧୁଥିଲେ    କେତେ ଗିରି ଶିଖ,
କହୁଲେ, 'ନ ଯାଅ ଦୂରେ,'
କେତେ କ୍ଷୁଦ୍ର ହ୍ରଦ    ଲୋଡ଼ୁଥିଲେ ତାକୁ
ବନ୍ଧୁ ଧରିବାକୁ ଉରେ ।

ନ ଶୁଣି ସେ କଛୁ    ଆସିଛୁ, ଜୀବନ
ସାଗରେ ଦେବାକୁ ନକ୍ଷ,
ସିନ୍ଧୁ ଅଙ୍ଗେ ସିନା    ତା ଅଙ୍ଗ ମିଶିଲେ
ଧନ୍ୟ ସେ ପାରିବ ହୋଇ ।

ସିନ୍ଧୁ ସିନା ତାକୁ    ତୁହାଇ ତୁହାଇ
ପଛେ ଫେରାଉଛୁ ପେଲି,
ଗୋଟି ଗୋଟି ଢେଉ    ପେଷି, କହୁଅଛୁ
''କଥା ମାନ ଯାଅ ଫେରି ।

ମୁଁ ସ୍ଥିର ସମୁଦ୍ର ଷାରେ ଅଛୁ ଗଡ଼
ମୋ ଢେଉ ଢଗଣ ଗୋଟି,
ତୋ ମଧ୍ୟ ଶଗର ଆଣି କଣା, ନଦ,
କୋଟେ ମୋ ପିବୁଲେ ଲୋଟି ?"

ଶୁଣି ଋଷିକନ୍ୟା କାନ୍ଦ କହେ ଧୀରେ,
"ନ କୁହ ନିଠୁର ବାଣୀ;
ତୋ ପ୍ରତି ପ୍ରୀତି ମୁଁ ବହି ଯେ ଆସିଛୁ,
କ୍ଷୀର ଷାର ନାହିଁ ଜାଣି ।

"ତୋ ଷାରେ ଢାଳିବି ମୋ ଷୀଣ ଜୀବନ,
ଅନ୍ତର କାମନା ମୋର;
ତୋ ଲାଗି ବହିଛି ଏ ପ୍ରାଣ ଭାବ ମୁଁ,
ଫଢାଇ ଦଅ ତୁ କୋଳ ।

"ନୋହିଲେ ଲୋଟିବି ସଇକତ ଶେଯେ,
ପଶ୍ଚିମ ଭୂଗର୍ଭେ ଧୀରେ,
ପଶିଥିଲେ ଯେସନେ ଧରାଦେ ଜାନକୀ
ଶ୍ରୀରାମ ନିଠୁର ଗୀରେ ।

"ସ୍ନେହ କି, ସିନ୍ଧୁ, ତୁ ନ ବୁଝୁ ହୃଦୟେ,
ବହି ଏ ତରଳପ୍ରାଣ ?
ତୋ ବଚନେ ମୋର କି, କହ, ଅଛି ଗତି
ବଷେ ତୋର ଦଅ ସ୍ଥାନ ।"

---

# ବାସି

ସ୍ୱର୍ଗ ପୁଷ୍ପରାଜ୍ୟ ପୁଣ୍ୟ ରାଣୀ ଗୋ ମାଳତି,
କାହିଁପାଇଁ ଏତେ ତୋର ସେନେହ ପୀରତି?
ଅନାଇ ରହିଛୁ ବାଟ କାହା ଆସିବାର,
ଗୁନ୍ଥି କାହାପାଇଁ ନିତି ରଖ୍ ପ୍ରୀତିମାଳ ?
ନୟନ ପଲକେ ସୁଖେ ସ୍ୱପ୍ନିଁକୁ ଧିଆନେ,
କି ଦୂର ପ୍ରତିମା ମୁଖେ କୁହେଁଛ ପରାଣେ ?
କପାଳ ତୋର ଗୋ ଏତ ନିତି ସ୍ୱପ୍ନ ବସା,
କି ବାଞ୍ଛା ସିଦ୍ଧିକି ଏତେ ଜୀବନ ତପସ୍ୟା ?
ଦିବାନିଶି ଅବିରଳ ବସି ଯୋଗାସନେ,
ଅଟଳ ସାଧନା ସାଧ୍ କି ପୁଲକ ମନେ ।
ନିତି ଶ୍ରମେ ଗୁନ୍ଥାମାଳ ଶୁଖେ ତୋର ନିତି,
ଆଶା ମାତରେ ଟି ଦିନୁଁ ଦିନ ଯାଏ ବିତି ।
ପୁଣି ଆଶା ଧରି ବସୁ, ସେ ପଥ ଅନାଇଁ,
ନୂଆ ପରି ଗୁନ୍ଥି ରଖ୍ ମାଳଟି ତା ପାଇଁ ।

କିଏ ସେ ଏଭଳି ଅଛି ଏ ବିଶ୍ୱ ଭିତର,
ତୋର ଏତେ ସାଧନାର ଉଚିତ ପାତର ?
ତୋ ଜୀବନେ ଅଛି ଯଦି ଏତେ ସ୍ୱପ୍ନ ବସା,
ଏ ମହା ସାଧନା ସଙ୍ଗେ ଏ ନିରାଶ ଆଶା ।
ତୋ ହାତର ଏତେ ମାଳା ବାସି ହୁଏ ଯେବେ;
ମୋ ପରାଣ ନିରାଶାର ହେତୁ କିବା ହେବେ ?

—•—

# ବାଛୁରୀକୁ ସାନ୍ତ୍ୱନା

'ହେ-ମା ହେ-ମା' ସ୍ୱରେ କେତେ ତୁ ଡାକୁଛୁ,
ମୁହଁରେ ନୋହୁଛୁ ସ୍ଥିର,
ନୟନ ଯୁଗଳୁ ଢାଳୁ ଅବିରଳ
ସରଣ ଦୁର୍ଲଭ ନୀର ।
ନ ଜାଣୁ କି ମାଆ ନ ଶୁଣେ ତୋ ଡାକ,
ବାଟ ଦୂର ଦେଶେ ଗଲା ?
ପାଞ୍ଚ କୋଶ ଏବେ ପାର ସେ ହେବଣି
କୁଦ ବନ ପଦା ବାଲି ।

---

କବିଙ୍କର କଟକ ବାସଭବନରେ ଗାଈ ସଂଖ୍ୟା ବୃଦ୍ଧିରୁ ଅଧିକ ହୋଇ ଯିବାରୁ, ସେ ଦୁଇଗୋଟି ଗାଈ ତାଙ୍କ ବାଣପୁର ଘରକୁ ୧୯୪୮ ମସିହାରେ ପଠାଇଦେଲେ । ସେ ଦୁଇ ଗାଈ ମଧ୍ୟରୁ ଗୋଟିକର ଛଅବର୍ଷ ବୟସର ବାଛୁରୀ କଟକରେ ରହିଗଲା । ସେ ଏବେ ଦୁଇଗୋଟି ବାଛୁରୀ ଜନ୍ମକରି ନିଜେ ଗାଈ ହେଲାଣି । ତା ମା ଏ ମଧ୍ୟରେ ବାଣପୁରରେ ମରିସାରିଲାଣି । କଟକରୁ ବାଣପୁର ପ୍ରାୟ ଅଶୀ ମାଇଲ । ବାଟରେ କାଠଯୋଡ଼ି ଓ କୁଆଖାଇ ପାରି ହୋଇଗଲା ପରେ ଅନେକ ବଣ, ପାହାଡ଼, ପଡ଼ିଆ ପଡ଼େ । କବିଙ୍କର ପତ୍ନୀ ଗୋରୁଗାଈ ଓ ଅତିଥି ଅଭ୍ୟାଗତଙ୍କ ଚର୍ଚ୍ଚା ବିଶେଷଭାବରେ କରନ୍ତି ।

ଖର ତାପେ ଦେହ ଝାଉଁଳ ଯିବଣି,
ପାଦେ ଲାଗିବଣି ବଥା,
ଗଛଡ଼ାଳୁ ପଦେ ଶୁଣୁଥିବ କାନେ
ବନ କୁଆ ବଣି କଥା ।
ଏହିପରି ଦିନ ଘୁରି ସେ ଘୁର୍ଲିବ,
ଘୋର ହୋଇଯିବ ଖରା,
ଫେରିବାକୁ ବାଟ ଘୂର ଦାଣ୍ଡି ତାର,
ବେକେ ଲାଗିଥିବ ଝୁଲା ।
ଘୂନଶ କୋଣେ ସେ ଯାଇଟି ଉହ୍ଲିବ,
ପାଳି ବାନପ୍ରସ୍ଥ ବ୍ରତ,
ବୁଢ଼ୀ ବୟସର ନୂଆ ସାଥି ମେଳେ
ନବ ଆବେଷ୍ଟନେ ରତ ।
ତୁ ହେଲୁ ପିଲାରୁ ତିନି ବର୍ଷ ଛଡ଼ା
ହେଲୁ ମାତୃସ୍ତନ ଛେଜ;
ଆପେ କାଲି ମାଆ ହୋଇ ତ ବସିବୁ,
କହକି ନ ପାରୁ ହେଜ ?
ଷଠୀ ଯେ ଜଗତେ ସୃଜୁଛି ପ୍ରାଣୀଙ୍କୁ
ଏହିତ ଅଟେ ତା ଲୀଳା;
ଜଣେ ଆସି ମଞ୍ଚେ, କାର୍ଯ୍ୟ ସାରି ଘୁଲେ,
କୋଡ଼ୁ ଉଠିଯାଏ ପିଲା ।
ନ ବୁଝ ଅବୁଝା, ବାପୁଣି, ନୟନୁ
ନ ବୁହା ଲୋତକ ଧାର;
ଏ ଗୋରୁ ଜନମେ ଗଢ଼ରେ ନିଜକୁ
ମର୍ତ୍ତ୍ୟେ ବଞ୍ଚିବାକୁ ସାର ।

ମାଆ ଯେ ଯାଉଛି କ୍ଷଣୁ କ୍ଷଣେ ଦୂରେ,
ପ୍ରବାସେ ରହିବ ଯାଇ;
ଏ ସାରା ଜୀବନେ ମାଆ ଟିଏ ବିନେ
ଭେଟ ଆଉ ହେବ ନାହିଁ ।
ପ୍ରବାସେ ଦେହଟା କେବେ ଅଲକ୍ଷିତେ
ଉଡ଼ିଯିବ ପ୍ରାଣ ବାୟୁ,
ଅସ୍ଥି-ମାଂସ ତାର ମାଟିରେ ମିଶିବ,
ସତ୍ତା ନ ରହିବ ଆଉ ।
କଣ୍ଠାଗତବେଳେ ତୋ କଥା, ବାପୁଣି,
ପଡିବ ଚଳିଛି ପର,
ସ୍ମୃତି ପୀଠେ ତାର ଉଇଁ ଅସ୍ତ ହେବ
ନେତ୍ର ମାର ଯିବ ଝର ।
ଯା ଦେହର ମେଦ ଅସ୍ଥି ଉପାଦାନେ
ଗଢ଼ା ଯେହୁ ଏ ଜଗତେ,
ଯେତେ ପଶୁ ହେଲେ, ଅନ୍ତିମ କ୍ଷଣେ କି
ମନୁ ବିସୋରିବ ସତେ ?
ବିଧାତା ଯେ ଜୀବେ ଦେଇଛି ଜୀବନ,
ସଙ୍ଗେ ମୃତ୍ୟୁ ଅଛି ସୃଜି,
ଅନନ୍ତ ଅନ୍ତରେ ମିଶିଯିବା ପାଇଁ
ଆଖି ଦେଲ ଦିନ ବୁଜି ।
ତେଣିକବେଳେ କି , ମାଆ, ଟିଏ ହେବ
ସବୁ ମନ ବେଦନା ଭେନ,
ଭେଟ ସିନା ଭାଗ୍ୟ ନ ଘଟିବ, ଯିବ
ମିଳି ପରସ୍ପରେ ବେନ ।

ସେ ମୁହୂର୍ତ୍ତ ଲାଗି କର ଛୁ ପ୍ରତୀକ୍ଷା
ଗଢ଼ିଯାଅ ଏ ଜୀବନ,
ବୃଥା 'ହେ-ମା' ଡାକେ ନ ଶୁଖାଅ ଗଳା
ନ ଭିଜା ଲୁହେ ନୟନ ।
ନ ଭାଳ; ସେ ବେଳେ ଶୋଷେ ବା ସନ୍ତପ
ସେ ଆୟୁ ଯାପିବ ସୁଖେ,
ଦୟାବତୀ ତାର ନୂଆ ଖାଉନ୍ଦାଣୀ
ନଜେ ଭୋଜ୍ୟ ଦେବେ ମୁଖେ ।



# ଆସିଛ *

ଏତେ ଦିନ ଅନ୍ତେ ଆସିଛ ଦୋସର
ବାହୁଡ଼ି ଏ ବନମାଳେ;
ତୁମ ତୁଲେ ପୁଣି ହସି ଖେଳ, ବାବୁ,
ରହିବ ପୁଲକ ଭରେ ।
ଏକାନ୍ତେ ସେ ଦିନ ହରଷ ବିଷାଦେ
ବସି ରହିଥିଲି ସ୍ମର୍ତ୍ତି,
ଗୋଟି ଗୋଟି ତୁମେ, ଆଖି ଆଗେ ମୋର
ବୁଲିଗଲ କେତେ କାର୍ତ୍ତି ।
ବଡ଼ ସକାଳୁ ମୁଁ ସାରି ଚର ଚରେ
ପାହାନ୍ତି କରମ ମୋର,
ସରସୀ ପୁଲିନେ ବହଇଲି ଆସି,
ଦେଖି ସୁଖ ଶିଶୁ ତୋର ।

* ଅବକାଶ ପରେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନେ ଘରୁ ଫେରି ଆସିବା ଉପଲକ୍ଷରେ ଏ ପଦ୍ୟ ଲେଖାଯାଇଛି । ସମ୍ବଲପୁରଠାରୁ ନରାଜମଧ୍ୟରେ ମହାନଦୀର ଶୋଭା କଟକ ତୁଳନାରେ ବହୁତ ବେଶୀ । ସୋଲଗ୍ରା ଓ ଘଣ୍ଟଶିଳା ବାଣପୁରର ଦୁଇଟୋଟି ପାହାଡ଼ । କବି ଓଡ଼ିଶାର ନାନା ଅଞ୍ଚଳ ବୁଲି ଦେଖିଛନ୍ତି । ସରଳ ପ୍ରାକୃତିକ ସୌନ୍ଦର୍ଯ୍ୟ ଅପେକ୍ଷା ଛାତ୍ରମାନେ ଥିବାବେଳର ସତ୍ୟବାଦୀ ବିଦ୍ୟାଳୟର ଶୋଭା ତାଙ୍କ ପକ୍ଷେ ବଡ଼ । ଏ ପଦ୍ୟରେ ସେହି ଭାବ ପ୍ରକାଶ ପାଇଛି ।

ତୁମେ ତ ସେଠାରେ କେତେ କେ କ ସବେ
ଯାଇ କରଥାନ୍ତ କେଳ,
ତା ଶୀତଳ ଜଳେ ପଖାଳ ଚରଣି,
କୂଟୀରେ ଆସନ୍ତ ଫେର ।
ଖାର ଚନ୍ଦ୍ର ଜ୍ଯୋସ୍ନା ଖେଳଇ ସଲିଳେ,
ଚଳ ଧୀର ସମୀରଣେ,
ବହଗ ନକର ଉଡ଼ ଗାଉଛନ୍ତ
ତୁମେ ତର୍ହିଁ ନାହଁ ଜଣେ ।
ସୋଦର ସେନେହେ ରହୁଥାନ୍ତ, ଏ ଯେ
କୁଟୀର ଉଆସ ପୃର,
ଜଣେ କାର ଜ୍ଯୋସ୍ନା ଆଉତ ନ ଆସେ
ନମିଷେ ଅସ୍ୱନ ଦୂଲ ।
ତୁଳଅନା ବଟ ତମାଳ ନକୁଞ୍ଜେ
ବହର ଜଷତ ପ୍ରାଣେ,
ନକୁଞ୍ଜ କୁସୁମ ପଲ୍ଲବ, ବାବୁ ହେ,
ଶୋଚୁଥାନ୍ତ ସନମାନେ ।
କେଉଁ ହତଶିଷ ନୋହୁଛୁ ଏହ ପେ
ବଶାଳ ବକୁଳ ବନ,
ପଥ ଘାଟ ଘର ସରସୀ ପ୍ରାନ୍ତର
ହଣେ କେଉଁ ଅଙ୍କଟଣ ।
ଯେତେ ସର୍ବ୍ବ ସୁଖେ ପୂର୍‌ଭରୁ ଥାନ୍ତ
ଏ ଗୁପତ ବୃନ୍ଦାବନେ,
ସେତେ ସେତେ ଠାବେ ତୁମ ମୂରତ ହେ,
ନେହେ ମୁଁ ନ ଦେଖେ ଷଣେ ।

କେତେ ମୁ ବିଦେଶେ ଦୂରେ ପାଶେ, ବାବୁ;
ଭ୍ରମିଲି ନଗରେ ଯାଇ,
କେଉଁ ଠାବେ କାହିଁ ଏ ମୋହନ ଶିଶୁ
ନିମିଷେ ଦେଖିଲି ନାହିଁ ।
ଶିଳା ଶେଯେ ତଳ ମଧ୍ୟ ଜଳ ଗୀତେ,
ପ୍ରସାରି ବିଶାଳ କାୟା,
ଛୁଟଇ କମନେ ଘଳ ତଷ୍ଟ ତଳେ
ଧଟଶ୍ରର ଗିରି ଗୁମ୍ଫା,
ଆସେ ବନ୍ଧୁ ସହିଁ ସ୍ୱଚ୍ଛ ଚନ୍ଦ୍ରୋଜ୍ଜ୍ୱଳା,
ସେ ସୁଧା ଧଉତ ସ୍ଥରେ,
ପାହାନ୍ତ ପ୍ରଦୋଷ ଶିଶୁ ତଳବାର
ଦେଖିଲି ଚପଳ ମାରେ ।
ଝଲକା ସଲିଳେ ଜଳ ବେଣୁ ଗୀତ
ଖେଳାଇ ବଦନ ଶୋଭା,
ତରଳ ଅପ୍ପୁନେ ବହର ଆସିବା
କେତେ ଆହା ମନ ଲୋଭା !
ସୋଲଲ ଶ୍ୟାମଳ ଚରଣ ବିପିନେ
ଉଦାସ ନୟନେ ଚାହିଁ,
ସାୟାହ୍ନ ଗଗନେ ଗିରି ବଣ୍ଟିଲା
ଦୂରେ ନିରେଖିବା ଯାଇ ।
ସକଳ ସମ୍ପଦୁ ବଡ଼ ସମ୍ପଦ ଯେ,
ହୃଦୟ ଅମୂଲ୍ୟ ନିଧି,
ଯାହା ପାଇଁ ଅଜ ତ୍ରିପାଠି ଦେଇଛି
ଜୀବନ ମୋହନ ବେଦୀ,

ସେ ବେଘା ନିମିଷେ ଶୂନ୍ୟ ହେଲେ, ବାବୁ,
ଶୂନ୍ୟ ଏ ପରାଣ ମୋର,
ଆକାଶ ଅବନୀ ନ ଦିଶଇ ମୋତେ,
ଆପଣା ହୁଅଇ ପର ।

ଏତେ ଦିନ ଅନ୍ତେ ଆସିଛ ଦୋସର
ଫେରି ଏ ନିକୁଞ୍ଜ ବନେ,
ତୁମ ତୁଲେ ସୁଖେ ଖେଳି ବୁଲି ନିତି,
ରହିବି ପୁଲକ ମନେ ।

ପଡ଼ା କୁଞ୍ଜେ ରୁଚି ଆବାସେ ଆନନ୍ଦେ
ବିହରି ତୁମରି ମେଳେ,
ଜୀବନର ମୋର ରଚିବି ସରଗ
ଏ ମର ଅବନୀ ତଳେ ।

ପାହାନ୍ତି ସମୀରେ ସୁଖେ ଗାଇବାର
ନିକୁଞ୍ଜ ବସନ୍ତଦୂତ,
ତୁମ ତୁଲେ ଖୋଜି, ଭରିବି ପରାଣ;
ଚୋବିବ ବିଧିର ଚିତ୍ର ।

ନିଶିଥିନୀ ନଭେ ନିରେଖି ନିମେଷେ
ଉଜଳ ତାରକାଗଣ,
ସେ ମେଳେ ତୁମରି ମେଳାପେ,ବାବୁ ହେ,
ମିଶି ହୋଇଯିବି ଲୀନ ।

କରମେ ବଚନେ ଯେତେ ଯାହା ଦିନେ
ଅଛି ଅବାଞ୍ଛିତ କରି;
ଅନନ୍ତ ସୋଦର ସେନେହେଁ ସକଳ
କ୍ଷମିବ, ଏତିକ ଅଳି ।

# ଫୁଟନା

ଦୁଆର ଆଗେଟି ଫୁଲଗଛ ମୋର,
ଫୁଲେ ଡାଳ ପତ ସୁଧା ଢଳଢ଼ଳ ।
ଧୂଳି ତଳେ ଶାଖା ଯାଉଅଛି ଲୋଟି,
ଦେଖେ ଅଛି ଫୁଲ ଧୂଳି ଦେଶେଯେ ଫୁଟି ।
ଭେଦି ବାତାୟନ, ଶବଳିତ ତନୁ
ଉଦାସ ପଲକ ଦରେ ମୋ ନୟନୁ ।
ହସି ଅଲକ୍ଷିତେ କେଶର ସମୀରେ,
ଖେଳି ଖେଳି ଯାଏ ମୃଦୁଳ ଲହରେ ।
ବିବଶ କରମ ଶରମ ବିଭୋର,
ଚହିଁ କପାଁ ହୃଦ ହୁଏ ମୋର ଢାଳି ?
ରଜନୀ ସୋହାଗ ଶୟନ ସପନେ,
ସେହି ଛବି ଗୁଣି ଲଳିତ ସ୍ମରଣେ ?

"ଫୁଲ ଆରେ, ଝାଳେ ଶୋଷିବୁ ନକର,
କେଶର ହିଲ୍ଲୋଳେ ଭରିବୁ ସମୀର ।
ଆଣିବୁ ବସନ୍ତ ବନଶ୍ରିୟୁ ନେଢ଼,
ନକୁଞ୍ଜି ନଟମସ୍ତ ଆତିଥ୍ୟ ଆଦର ।

ହୃଦସ୍ଥ ଅମୃତ ବିସାରେ ନ ବସି,
କଣ୍ଠୁ ଧାର ଯେବେ ତାନର ସେ ହସି;
ଶୁଣିବେ ଜଗତ ବିମୋହିତ ଜନ,
ଫୁଲ ରେଣୁ ତାନେ ବିରତ ଶ୍ରବଣ ।
ଦିନକ ଜୀବନ ଲଭି ଏ ମରତେ,
ଏଥୁ ବଳି ବେଶି କି କରନ୍ତୁ ସତେ ?
ଦିନଟି ଯାବତ ସଙ୍ଗିସଙ୍ଗ ମେଳେ;
ସେନେହ ଆଳାପେ ଯାପିବୁ କୁଶଳେ ।
ପ୍ରାଚୀ ଦିନମଣି କନକ ବରଣେ,
ଯେ ନୟନ ଫେଇ ଚାହିଁଲ ଭୁବନେ,
ପ୍ରତୀଚୀ ଗଗନେ ସେହି ଦିନମଣି
ସ୍ୱର୍ଣ୍ଣ ମେଘେ ଯେବେ ବୁଡ଼ିଯିବେ ପୁଣି;
ମୁଦ ତେବେ ସେହି ନୟନ ଯୁଗଳ,
ଦିଶି ଆଦ ତଳେ ଡାଳରୁ ଆବର,
ଯେପରି ବୃନ୍ତବାସୀ ବାଞ୍ଛିତ କଳିକା
ପ୍ରାତେ ଫେଇବାକୁ ଝୁରୁ ତନୁ ଲେଖା ।"

"ଫୁଲ, ଆମେ ପୁଣି ପରାଣ ଏ ଭବେ,
ସୁଖ ଦୁଃଖେ ହୃଦ ଦହୁନାହିଁ ଲଭେ ।
ଫୁଟିବା ଝଡ଼ିବା ସମାନ ଦୁଇଟି;
ଝଡ଼ ଯିନା ସୁଖ, ତନ୍ତୁଡ଼ାଳେ ଫୁଟି ।
ମଣନା, ମାନବ, ଅଜ୍ଞାନ ଜଟାଳେ,
ବଞ୍ଚି ବଢ଼ ହେବୁ ଏ ଖର ସଂସାରେ ।

ଫୁଟି ଲୁ ଝଡ଼କୁ ଉଦାସ ହୃଦୟେ
ସୁଧା ଆବର୍ତ୍ତନେ ଅନନ୍ତ ସମୟେ ।
ତେବେ ଚହ୍ଲୁଡ଼ାଲେ ଶୋଷିବୁ ନକର
ଆମସ୍ତୁ ମେଳେ କନକଚ ଫୁଲ ।"

"ଫୁଟ ନାହିଁ, ଫୁଲ, ଫୁଟନା ଏଭଳି,
ମୃଦୁ ସମୀରଣେ ମଧୁ ମନ୍ଦେ ଡଳି ।
ଧୂଳି ଶେଯେ ବୃଥା ଯାଉଁଅଛ ଲେଟି,
ଦସଇ ଉଦାସେ ତନୁ ହେମ ଜ୍ୟୋତି ।
ଫୁଟିଛୁ ଶ୍ମଶାନେ, ପୃତିକା ପ୍ରାନ୍ତରେ,
ଅଦ୍ଭବ ମାନବ ପଥେ ପାଦତଳେ ।
ଫୁଟ ଯେତେ ଠାବେ ଫୁଟରେ ବାସନା;
ଏ ତନ୍ତୁ ତଳପେ ଫୁଟନା ଫୁଟନା ।
ଅଙ୍ଗେ ଲଗିବାର ବାଉ ଧୂଳି ମାଟି,
କୁସୁମ କେଶରୁ ନଭବାର ଜ୍ୟୋତି—
ଦେଖିବ କପରି, ଧରି ଏ ନୟନ ?
କହିବ—"ଫୁଟ ରେ ଅପନ୍ତୁ ମଳନ ?
ଫୁଟ ନାହିଁ, ଫୁଲ, ଫୁଟନା ଏଭଳି,
ଭାଙ୍ଗୁ ଭାଙ୍ଗୁ ଚଳେ ପଡ଼ ବେଗେ ଝଡ଼ି ।
ଭାଠ ତନୁ ବେନ ରନ୍ତୁ ଏ ପାବଚ,
ନଠ୍ର ଜଗତ ଯୋଗ୍ୟ ପ୍ରତିରୂପ ।"



# ଭେଟି

"ଝଢ ଝଢ ଢୋଳ ପାଟଅନ୍ଧ ଡାଳେ
ଆଣିଛୁ ଯତନେ ତୋଳି,
ସାଂଧ୍ୟ ଉପାସନେ, ନ ଜାଣେ, ସଖା ହେ,
କା' କରେ ସମର୍ପିବ ବୋଲି ।
ତୋଳି ନଜେ, ସୁଖେ ଗୁଞ୍ଜିଥାନ୍ତ ନଜେ,
ଶତ୍ରୁ ମୋ ବଳନ୍ତ ନାହିଁ,
ଏ ସ୍ୱର୍ଗ ମଧୁ କ ମୋ ତିକ୍ତ ଅଧରେ
ପରଶି ପାରନ୍ତା କେହ୍ନ ?
କରେ କା' ନ ଥାପି, ଫିଙ୍ଗିଦେବ ତଳେ,
କେତେ ତ ପାଞ୍ଚିଲି ମନେ,
ନମିତେ ମୁରୁଛୁ ପିଙ୍ଗି ନ ପାରିଲି
ଲକ୍ଷ୍ୟକର ବସ୍ତୁରଣେ ।
କାରେ ଦେବ, ଆହା କେବଣ ଜନ ସେ,
କେ ପାଖ ଅଛି ତା ପାଇଁ,
ଆଲୋକ ଅନ୍ଧାରେ ବନ ପଦା ଘରେ
ଖୋଜ ନ ପାଇଲି କାହିଁ ।

ଆସିଛ ସଖା ହେ ଦେଖ ମୁଁ ପ୍ରକୃତି
ଯେନ ତ ବଢ଼ାଇ କର,
ତୁମ ଭଳି ଜନ ପାଇଁ ସିନା ଏତ୍ତ
ନିଧି କରି ଆସେ ଜୁରି ।
ଜାଳେ ଥିଲେ, ତରୁ ଶୋଭା ସେ ବଢ଼ାଇ-
ଥାଆନ୍ତା ନିଖିଳ ବନେ,
ତୁମ କରେ ଏବେ ଶୋଭିବ ମରତ—
ପ୍ରୀତି ଅକଳଙ୍କ ଧନେ ।
"ନଷ୍ଟ, ବନ୍ଧ୍ୟ, କନ୍ତୁ କରି ବଢ଼ାଇ ହେ,
ରଖି କି ପାରିବ ଧରି ?
ନେଇ କି ପାରିବ ଏ ମରୁ ଜୀବନେ
ଏଭଳି ସମ୍ପଦ ବରି ?
ଫୁଲ ପରି ଦିନେ ଦିଶି ନାହିଁ ତୋରା,
ଫଳ ପରି ଢଳ ଢଳ,
ତୋଳିବା ଜନର ପରଶ ପୁଲକ
ଦିନେ ତ ନୋହୁଛି ମୋର ।
ବନ ପରବତେ ବୁଲି ମୁଁ ନିରତେ
ପାଳିଛି ବନ ତରୁ,
କାଠ ପାଷାଣେ ତ ଗଢ଼ିଛି ଏ ତନୁ,
ଜୀବନ କରିଛି ମରୁ ।
ଯାହା କରେ ଯାହା ଶୋଭିବ ସିନା ହେ,
ସେ ତାହା ପାଉଛି ନେଇ,
ମୋ ଲାଗି ଏ ନୂତନ ଯୋଗ୍ୟ ଉପାୟନ,
କି ଲଭ୍ୟ ମୋ କରେ ଦେଇ ?"

"ଗନ୍ଧ ମୁଁ ସରଳ    ଜଡ଼ ଏ ଜଗତେ,
ଚଷ ଫୁଲ ଫଳେ ଗଢ଼ା,
ମୁଁ କବା ବୁଝିବ    କ ସୁଧା ନଝ୍ଟରେ
ବନ୍ଧୁ ବନ୍ଧୁ ହୃଦଭଲ ?
ଝନୁ ଝନ ଅଙ୍ଗେ    ସେନେହ ବରଣେ
ବହୁଛି ତନୁଜ ଭାର,
କାଠୁଟି ପଲ୍ଲବ    ହେଲ୍ଲିବୁ ସୁମନ
ସୁମନୁ ଝରଚ ଫଳ ।
ସାର୍ଥକ କରନ୍ତୁ    ଏ ତରୁ ଜୀବନ
ଝଣ୍ଟବନ ପରସରେ,
ମୋ ଫଳ ଭାସରୁ    ଏ ବନ୍ଧୁଟି ଯେବେ
ସ୍ୱେନନ୍ଦା ଗୋଟିଏ କରେ ।
ଫଳ ବହିବାର    ଚେଜନ୍ତୁ ଜନମା-
ସେନେହ ବାସନା ଭବେ,
ଫୁଲ ଝରେ ତନୁ    ନୁଆନ୍ତୁ ଜଷଟେ
ବନ୍ୟ ତରୁ ଗଜରବେ ।
ମଳୟ ସମୀରେ    ଲେଉଡ଼ନ୍ତୁ ସରଗେ
ମୋ ଶୋଭା ପରଶ ପାଇଁ,
'ଝହଗ ପରାଣ    ଗାଥା ଫେଡ଼ ଥରେ'
କହନ୍ତୁ କୋକଳେ ସଭ ।"

ଏକ ସଖା ହାତେ    କୋଳ ଠହ ଠହ
ଅନାଇ ଅପର କ୍ଷଣେ,
ମାରବ ନୟନେ    ନରେଖିଲ୍ ତରୁ
ସାନ୍ଧ୍ୟ ଅଧ ଆଁଲୋକନେ ।

କବା ସେ ଭାଳିଲା ହୃଦୟୁ ବସାରେ
ନିମିଷ ମଞ୍ଜନ ଭାଷେ,
ଲୋତକେ ଅକୂଳ କମ୍ପିଲା ନୟନ
ଅଧର ମୃଦୁଲ ହାସେ ।
ବଢ଼ାଇ ଭୂରରେ କର ଯୁଗଳ, ସେ
ସଖାରୁ ଦେନାଲା ଭେଟି,—
"ଏନ୍ତୁ ସ୍ନେହ ସଦା ରଖିଥିବ, ବନ୍ଧୁ,
ଏ ଡୋରୁ ନ ଦେବ କାଟି ।"



# କି ଦାନ !

ହସ ହସ ମୁଖେ, ବନ୍ଧୁ, ଅଶ୍ରୁଳ ନୟନେ
ଦେଇଥିଲ ସୁମନ ଟି, ପଡ଼ଇ କି ମନେ ?
ନିମିଷେ ବଢ଼ାଇ ହାତ, କେଜାଣି କାହିଁକି,
ନିଜସ୍ୱ ପରଶେ ହାତୁଁ ନେଲି ଫୁଲଟିକି ।
ମୋହନ ପ୍ରତିମା ଫୁଲେ ପଲକେ ଅନାଇଁ,
ଫେରାଇଲି ଆଖି ତୁମ ଦରଶନ ପାଇଁ ।
ଆଖି ଆଗୁ କାହିଁ ତୁମେ ଯାଇଥିଲ ଲୁଚି,
କେବେହେ ସେ ଯେ ଅଶ୍ରୁଟିକି ନୁହଇ ମୁଛୁଛି ।
କେତେ ତ ଲୋଡ଼ିଲି ଫୁଲ ଧରିଥାଇ ହାତେ,
କେତେବେଳ ଅନାଇଲି ତୁମ ଯିବା ବାଟେ ।
କରୁଣ ଅନ୍ତରେ ଶେଷେ ଆସିଲା ଉତ୍ତର—
"ଖୁଲିଗଲେ, ଦେଇଛନ୍ତି ଦେଖେ କି ସମ୍ଭାର ।"

ଏବେ ତ ଦେଖୁଛି, ବନ୍ଧୁ, ସୁମନ ସମ୍ଭାରେ,
ମିଶିଯାଇଅଛ ତୁମେ କେଶର ଉପରେ ।
ହାତର ଫୁଲଟି ଆହା ଏତେ ମଧୁମୟ,
କହୁଛି ତାହାରି ମୋର ପରାଣର କଥା ।

ମୁଖର ଯେ ହସଟିକେ ସମ୍ପିଥିଲି ନିଧି;
କାଳ ଗର୍ଭେ ସିନା ତାହା ଲୁଚ୍ଛଇଛି ବିଧି,
ଫୁଲେ ଆଜ ସନ୍ନିହିତ ମୋ ସାରା ଜୀବନ,
ଫୁଲଟି ସେ ହୋଇଛି ମୋ ପରାଣ ରତନ ।

ସେ ଯେ କି ଯତନ ନିଧି ରଖିବ ମୁଁ ନାହିଁ,
ବେନସାଅ, ସୁଖେ, ବନ୍ଧୁ, ଦେଉଛୁ ଫେରାଇ ।
ଏ ଦାନ ଅମୂଲ୍ୟ ଏବେ ଦାତାଠାରୁ ବଳ,
ଦାତାର ସମ୍ପଦ ଭଲେ ନ ପାରେ ମୁଁ କଳ ।



# ପରିଚୟ *

କାହୁଁ ସେ ଆସିଲ, ସଖା, ଦେଇଗଲ ଦେଖା ମୋରେ ?
ମୁଁ ତ ଥିଲି ନିର୍ଜନେ ମୋ, ମୋ ଧ୍ୟାନ କୁଟୀର ପୁରେ ।
କିପାଇଁ ଗଲ ହେ ଏଥି ନିମିଷ ମାତର ବସି,
ନିସ୍ୱନ କନକ କୋଣେ ପ୍ରୀତି ଆଳାପନେ ହସି ?
ଜାଣି ତ ନ ଥିଲି କେବେ ଶୟନ ସପନ ଭ୍ରମେ,
ଚରାଚରେ ସ୍ଥିତି ତବ, ଅସୀମ ଅବନୀ ବ୍ୟୋମେ ।
କେତେବେଳ ଅନ୍ତେ, ବନ୍ଧୁ, ଶରମେ ପୁଚ୍ଛିଲି ନାମ,
ତେବେ ହେଲେ, କେତେ ଦଣ୍ଡେ ହୋଇଗଲ ଅନ୍ତରଣ ।
ଆବର ପୁଚ୍ଛିବା ଲାଗି ମନ ମୋ ବଳିଲା ନାହିଁ
ଅନ୍ତରଣେ, ବନ୍ଧୁ ମୋର, ଉଭେଇଟି ଗଲ କାହିଁ ।

---

* ଏ ପଦ୍ୟର ନାୟକ 'ନବ ପରିଚିତ ବନ୍ଧୁ' ଜଣେ ବାଲେଶ୍ୱରବାସୀ ଯୁବକ । କବିଙ୍କ ସଙ୍ଗେ ପ୍ରଥମ ପରିଚୟବେଳେ ସେ କଲିକତାରେ ପଢ଼ୁଥିଲେ । ପରେ ସେ କୋରାପୁଟ ଜିଲ୍ଲାରେ ଶିକ୍ଷକତା କଲେ । ସେ ଜଣେ ସାହିତ୍ୟିକ, ମାତ୍ର ସାହିତ୍ୟ ସେ ନିଜେ ଲେଖିବା ଅପେକ୍ଷା ଭଲ ବୁଝୁଥିଲେ । ବଲାଙ୍ଗିରପାଟଣାରେ ବାଲ୍ୟଜୀବନ କଟାଇଥିବାରୁ ବନପର୍ବତର ପ୍ରାକୃତିକ ଦୃଶ୍ୟ ତାଙ୍କୁ ଭଲ ଲାଗୁଥିଲା । ଏବେ ସେ ଆଉ ଇହଧାମରେ ନାହାନ୍ତି ।

ଛବାପ୍ତ ବେଳର ସେ ଯେ ନୟନ ପଲକ ଖେଳା,
ହୁହୁଁ ହୁବେ ବନ୍ଧିବାର ସରଗ ଅମୃତ ଧାର;
ଅଧବାଟୁ ସଙ୍ଗେ ମୋର ଆସି ଚିତ୍ତ ବସାଉଣେ,
ଅଧ ଆଳାପନେ ଏଥି ନିବସି ମଜନ ମନେ,
ବରପଦ କ୍ଷେପେ ପଥେ କି ଅଦୃଶ୍ୟ ଡୋରେ ଟାଣି,
କୁଟୀର ଦୁଆରେ ମୋର ମାଗି ଯେ ନେଲ ମେଲାଣି—
ସକଳ ବିସୋରି ମନୁ, ଗଲ ଅପସରି କାହିଁ,
ମଜନେ ନିମିଷ ବେନ ରହିଲି ମୁଁ ବାଟ ଚାହିଁ ।

ମଧୁ ଶ୍ରୀପଞ୍ଚମୀ ଆଜ, ନବ ଋତୁ ଭୁଲେ ମିଳି,
କି ପୁଣ୍ୟ ବନ୍ଧନେ ଖେଳେ ଜଗତ ଅନନ୍ତ ଶିଶୁ,
ନବ ପିକ ସୁଧା ସ୍ୱନେ ଶିଶୁ କଳକଣ୍ଠବାଣୀ,
ଶୀତଳ ସାୟାହ୍ନ ନଭେ ବାନ୍ଧିତ ରଜନୀ ରାଣୀ;
ବାତାୟନେ ବସି ଧୀରେ ଆସଇ ମଳୟଧାର,
ତରୁ ସନ ସ୍ୱନ ସ୍ପନ୍ଦେ ଢାଳ ଏ ପରାଣେ ମୋର ।
କି ଭାବେ ଲୋଡ଼ଇ କାରେ, ତିଳେକ ନୁହଇ ଜାଣି;
କଏ କେତେବେଳେ ଆସି ଫେରେ, ମୁଁ ନପାରେ ଚାହିଁ ।

ଥିର ହୁଅ ନିମିଷେକ, ପଡ଼ୋଶୀ ବିପଞ୍ଚୀସ୍ୱନ,
ଭୁଲ ହୁଅ ବପଣୀର ବାଳୁତ ଅମୃତ ତାନ,
ବନ ପରବତ ପଦା, ସରସୀ ସାଗର ନଈ,
ସୁଦୋଷ ପାଟଳ ନଭ, ପୁଁନଅ ନିଶୀଥ ମହୀ,—
କେତେ ମୁଁ କାହାକୁ ଆଜ ତିଳେ ନ ପାରଇ ଚାହିଁ,
ଯେତେ ଯେତେ ଆପଣାର, ମୋ ନିଜ ଆପଣା କହି ।

ଏ ମହା ଅଚହ୍ନା ଗୋଟି ଜୀବନେ ଅଛୁ ଯେ ରତ୍ନ,
ପଲକର ପରିଚୟୁ ମିଶି, ସଖା, ଗଲ ଚହ୍ନିଁ ।
ଏ ମଧୁ ସାୟାହ୍ନେ ଆଜ ହୃଦୟୁ ହିଲ୍ଲୋଳ ଖେଳେ,
ତୁମ ସେ ବଦନ ସାଚ ଉଠଇ ଉଜ୍ଜ୍ୱଳ ଢାଳେ ।
ଅଚହ୍ନାରୁ ଅଚହ୍ନା ହେ, ହୁଅ ଏ ଜୀବନେ ଆସି,
ସିନ୍ଧୁ ନଦୀ ଗିରିବନ ପଲ୍ଲବ କୁସୁମ ମିଶି ।



# ମର୍ତ୍ତ୍ୟ ନାହିଁଛି ଏକା *

ଦୂର ପରବାସେ ଚାଲି ଯିବେ ଭାଇ,
ବରଜି କୁଟୀର ସୋହାଗ ଶିଶୁ;
ସେ ଲାଗି ସଙ୍ଗରେ ଆସିଛୁ ପିଲାଟି,
ଅଧବାଟେ ଦେବ ମେଲାଣି ବୋଲି ।

ବନ ଝାଲ କେତେ ପାରି ହୋଇ ଆସି,
ତରୁ ତଳେ ବସି ରହିଲେ ବେନ,
ସେହିଠାବେ ଯିବେ ଦୁହେଁ ଦୁଇ ଆଡ଼େ,
କେତେ ଯୁଗ ଲାଗି ମେଲାଣି ଯେନ ।

"ଦେଖୁଛୁ ତ, ବାବୁ, ବନ ଗିରି ଘୋଟି
କି ଘୋର ବରଷା ଆସୁଛି ମାଡ଼ି,
ଯାଅ ତୁ ତୁରିତେ କେତେ ବାଟ ଯିବୁ,
ମୁଁ ତ ଏହିକ୍ଷଣି ଯିବଇଁ ଚାଲି ।

---

* ରଣପୁର ଗଡ଼ଜାତ ରାଜ୍ୟ ଥିଲା, ଏବେ ପୁରୀ ଜିଲ୍ଲାର ଅନ୍ତର୍ଗତ ହୋଇଛି । ରଣପୁର, କବିଙ୍କ ଜନ୍ମସ୍ଥାନ ବାଣପୁରକୁ ଲାଗିଛି । ମଣିନାଗ ପାହାଡ଼ ତଳେ ରଣପୁର ଗଡ଼ । ମଦାଗ୍ନି ନଈ ରଣପୁର ଗଡ଼ ପାଖେ । ତାହା ଦୟା ନଦୀରେ ପଡ଼ି ଚିଲିକାକୁ ଯାଇଛି ।

ଚଲ ବଣ ବାଟେ ଦେଖି ଚାହିଁ ଯିବୁ,
ନ ଭିଜିବୁ ପାଣି, ଟେକିବୁ ଛତି,
ବସି ଉଠି କାହିଁ ହେଳା ନ କରିବୁ,
କଲେ ହେଳା ହୋଇ ଯିବରେ ସଞ୍ଜ !

ଭୋକ କଲେ ବାଟେ ଖାଇବୁ, ବାବୁରେ
ଶୋଷ କଲେ ପାଣି ପିଇବୁ ନକି,
ଦୁହେଁ ସିନା ଥିଲେ ହସି ଖେଳି ଆସି
ଏକା ଭୁଇଁ ଚାଲି ପାରିବୁ ଟି କି ?"

ନିଜ ପିନ୍ଧା ଖଣ୍ଡି ପାଲଟି ଭାଇଟି
ଭାଇରେ ବସନ ଦେଲା ପିନ୍ଧାଇ;
ବାଟେ ଚାଲି ବନେ ମେଘ ବରଷିବ
ଦେଲା ଭାଇ ହାତେ ଛତିଟି ନେଇ ।

ନିଜ ବାଟ ଖର୍ଚ୍ଚ ଖେଣ୍ଟି ସେ କହିଲା,
ଦେଇ ଭାଇ ହାତେ କଉଡ଼ି ଗଣି,
"ଗାଆଁରୁ ଗାଆଁକୁ ଯହିଁ ଯାହା ମିଳେ
ଖଜା ପିଠା ମୁଆଁ ଖାଇବୁ କିଣି ।

ବୋଉକୁ କହିବୁ ଭାଇ ଗଲେ ସୁଖେ
ସାଥି ସାଙ୍ଗ ବାଟେ ମିଳିଲେ କେତେ;
ଖରା ବରଷାର ନ ଥିଲା ଦେଖିଛି
ବାଟ ଶ୍ରମ ହୋଇ ନ ଥିବ ପ୍ରତେ ।

କନ୍ଦିବୁ ମୋ ଲାଗି ଝଲକ ନାହିଁଟି,
କାନ୍ଦିଲେ, ବାବୁରେ, କରିବୁ ତୁନ୍;
ରାତି ହେଲେ ଯାଇ କୋଳେ ଶୋଉଥିବୁ
କଣ୍ଠ ଛୁଁ ପସ ସେ ଆମଣ ଶେଜ ।

ଘରେ ଗଲେ ସୁଖେ ଖେଳିବୁ ବୁଲିବୁ
ମୋ କଥା ମନେ ତୁ ହେଜିବୁ ନାହିଁ,
ଯାଉଛି ସିନାରେ, ଚାଲ ଆଜ ବାବୁ,
ମାସେ ନୋହୁ ଫେରି ଆସିବି ମୁହିଁ ।

ମଲ୍ଲୀ ଗଛଟିରେ ଦେଉଥିବୁ ପାଣି,
'ଶୁଆଟିକି ଦୁଧ ଦେବୁ ରେ ନିତି;
ହେଳା ନ କରିବୁ ମୁଁ ଫେରି ଆସିଲେ
ଆଣିଥିବି ଭଲ ପଞ୍ଜୁରି ଗୋଟି ।

ଯାଆ ଏବେ ଯାଆ ଠିଆ ମୁଁ ହୋଇଛି,
ସେ ବାଙ୍କ ସଡ଼କେ ହେଲେ ତୁ ପାର,
ଆଉ ଯେବେ ତୋରେ ନ ଦେଖି ପାରିବ
ମୋ ବାଟେ, ବାବୁ ରେ ଯିବ ମୁଁ ଚାଲି ।”

ଗଲା ଭାଇ ପାଶୁ ଠିଆ ସେ ହୋଇଛି,
ଭାଇ ଲୁଚିଗଲା ସଡ଼କ ବାଙ୍କେ,
ପୋଛି ଟପ ଟପ ନୟନୁ ଲୋତକ,
ଧୀରେ ପାଦ ଚାଲି ଚାଲିଲା ଦୁଃଖେ ।

ବରଷା ବତାସି ମାଡ଼ ସେ ଆସିଲା,
ଛତା ନାହିଁ ହାତେ ତିନ୍ତଲା ତନୁ;
ସାହା ସାଥି ନାହିଁ, ଶୋକ ସେ କରୁଛି,
ଭାଇ କଥା ଭୁଲି ନ ପାରେ ମନୁ ।

"ଏକାଠିରେ କେବେ ଛାଡ଼ି ତ ନ ଥିଲି
ସରୁ ନୋହୁଥିଲୁ କାହାର ବିନେ,
ଏ ପାଣି-ପବନେ ବିଲ-ବଣ-ବାଟେ
ବୁଲୁଥିବୁ ବାବୁ, କି ଦିନମାନେ !

କାନ୍ଦିଲେ,'କାନ୍ଦନା' କଏ କହିବ ରେ,
ଲୁହ ପୋଛୁଦେବ ତୁନଟି କର ?
ମାଆ ମଣିନାଗ, ମୋ ଦୁଃଖୀ ଭାଇରେ
ସବୁ ଶୁଭେ ଆଜ ନଅ ଗୋ ଭୁଲ ।"

ଏକାଠିରେ ବାଟେ ଭାଳ ଏତେ ମନେ
ମିଳିଲା ସଙ୍ଗେ ସେ ପ୍ରବାସ ବାସେ,
ମାଆ ଭାଇ, କେନ ପଗଣ ସଙ୍ଗାଳ
ମୁହୁଛି, ଏକାଠି ରହିବ ମାସେ ।

ମାସକ ଅନ୍ତରେ ଫେରିବ ଘରେ ସେ,
ଭାଇରେ ଓଦାସର ନେଖିବ ଯାଇ,
କେତେ କିବା ନେବ ଭଲ ଦ୍ରବ୍ୟ ବାଛି,
ପଞ୍ଜୁରି ତ ନେବ ଶୁଆଟି ପାଇଁ ।

ଲାଇଟି ତାର ଯେ ବାଟ ଭୁଲି ଏଣେ,
ଆସୁଛି ବରଷା ବଢାସି ସନ୍ଧ,
ଛତିଟି ଧରିଛି ହାତେ ସେନ୍ତଣେ,
ଭୁମେ ମାଝ ଥରେ ନ ଢଏ ଫେଇ ।

କଇଁଢ଼ ମୁଠିଟି ଖୋସି ରଖିଅଛି
ଭୋକେ ଶୋଷେ ତାର ଜଳୁଛି ପେଟ,
ଗାଆଁରୁ ଗାଆଁକୁ ଖଜା ଟିଠା କେତେ
ଦେଖେ, କଣିବାକୁ ନ ଯାଏ ହାତ ।

ବସି ଉଠିଯାଏ ବଣ-ଝଲ-ବାଟେ,
ସାହା ସାଥି ଜଣେ ନାହିଁଟି କେହି,
କେତେ ବାଟ ତାର ଯିବାକୁ ଅଛି ତ
ଅନ୍ଧାର ଘୋଟି ଯେ ଆସିଲା ମଣ୍ଡି ।

ସାଇଁ ସାଇଁ ବହି— ଆସିଲା ପବନ
ଟପ ଟପ ପାଣି ବରଷେ ଟାଣେ,
ବିଜୁଳି ଚମକ, ଘଡ଼ଘଡ଼ ନାଦେ
ବଣଜନ୍ତୁ ନାହିଁ ବୁଲନ୍ତ ବଣେ ।

କେତେ ବନ ଗିରି ପାରି ହେଲା ପିଲା,
ଘର କଥା ମନେ ହେଉଛି ଭାଳି,—
"ଏକାଟିରେ ମୁହିଁ ବୁଲି ଯେ ଅଇଲି
କେତେ ଆହା ନୋହୁଥିବେ ସେ ଘାର ।

ପରବାସେ ଯାଇ କେଉଁ ଗଛ ମୂଳେ
ବସିଥିବେ ଦୁଃଖେ ମଥାଟି ପୋତି,
ଆହା ବୋଲିବାକୁ କାହିଁ କେ ନ ଥିବ,
ଯାଇବ କପରି ଏ କାଳ ରାତି ?"

ସେ କାଳ ରାତି ଯେ ପାଉନାହିଁ ପାର,
ବାଟ ବଣ କଟୁ ନୋହୁଛି ବାଣ,
ଘନ ଘନ ବନ ହେଉଛି ଅନ୍ଧାର,
ଯେତେ ଦୂର ସେତୁ ଯାଉଛି ଚ୍ୟଲ ।

ନଈ ବନ୍ଧୁଯାଏ କଳ କଳ ନାଦେ
ପେଲନଦ କେତେ ପଥର କାଠ,
ଆଖି ବୁଜ ପିଲା ପଡ଼ିଲା ତ ଡେଇଁ
ଆରକୂଳେ ପଶ ମିଳବ ବାଟ ।

ପରବାସେ ଘର ଗଣୁଅଛି ଧନ
ମାସକ କଣ୍ଟ ତ ପୂରିଲା ଆସି;
ରାତି ହେଲେ ତାକୁ ନିଦ ଯେ ନୋହୁଛି,
ଧନ କେଲେ ଥିରେ ନପାରେ ବସି ।

କେତେ ନୂଆ ଦ୍ରବ୍ୟ ବାନ୍ଧୁଛି ସଙ୍ଗତେ,
ପଞ୍ଜୁରିଟି ହାତେ ଅଛଇ ଧରି,
ସେହି ବଳ-ବଣ- ବାଟେ, ଚ୍ୟଲ ଘର
ଚନ୍ଦ୍ରା ଗଛ ତଳ ହୋଇଲା ପାରି ।

ଘରେ ଆସି ଦେଖେ ଶୁଆ ନାହିଁ ଆଉ,
ମଲ୍ଲୀ ଗଛ ଶୁଖି ହେଲଣି ଡାଳ,
'କାହିଁ ଭାଇ ମୋର ?' ପଚାରେ ଦଅଁଳା,
କଥା ନାହିଁ ଆସେ ଭୁଣ୍ଡକୁ ତାର ।

ମଣିନାଗ ଗିରି ତୋଳନ୍ତି ସେ ମଥା,
ମହାଗିରି ସୁଅଚ ନୋଇଁଛନ୍ତି ଗୁଣ,
ରଣପୁରେ ଅଛି ମନୁ ସେବୁପର
ଭାଇଟି ତା ମର୍ତ୍ତ୍ୟେ ନାହିଁଛି ପିନ ।



# ପିକର ଫଗୁଣ-ଗୀତି

ଗାଅ ଗାଅ, ପିକ, ବସି ଗଛଡାଳେ
ଗାଅ ତୋ ଫଗୁଣ-ଗୀତ,
ବରଷକ ଅନ୍ତେ ଢାଳବେ ପୁଣିରେ
ତୋର ବିମୋହନ ପ୍ରୀତି ।
ପ୍ରତି ପଲକେ ତୁ ଗାଉଛୁ ଯେଉଁଳି
ପରତେ ହୁଅଇ ମୋତେ,
ଗାଇ ଗାଇ ପ୍ରାଣ ଫୁହାଇ ଦେବାକୁ
ପେଷିଛି ବିଧି କି ତୋତେ ?
ଦିନୁ ଦିନ କେତେ ଶୁଣିଛୁ ଏ ଗୀତ
କରମ ବିଗୁମେ ବସି,
ସଞ୍ଜ ସକାଳେ ମୋ ଫଗୁଣ-କୁହରେ
ଯାଅଇ ହେଲେ ପରଶି ।

କି ଗାଉଛୁ ପିକ ତୁହାଇ ତୁହାଇ
ବିନେତ ବୁଝିଲି ନାହିଁ,
ତୁହି କରେ ଗଢ଼ା ଗାଇବାକୁ, ମୁହିଁ
ଖାଲି ତା ଶୁଣିବା ପାଇଁ ?

ସ୍ୱପ୍ନରେ ମୁଁ ଯେବେ    ମୋ କଳ୍ପିତ ଗାଥା
ଫେରନ୍ତୁ ବସନ୍ତ ଦୂତ,
ପର ନମିଷେ ତା    ଆନ ରୂପ ଧରେ,
ସ୍ୱପନରେ ଗାଉ ଛୁ ତା ।
ଭୃଙ୍ଗ ଗାଉଥାଉ    କି ଗୀତ ଅମର
ତରୁରୁ ତରୁକୁ ଉଡ଼,
ଦଗେ ଦଗେ ବ୍ୟାପି    ବ୍ୟୋମ ବସୁନ୍ଧରା
ଚଳିଁ ଯାଉଥାଏ ପୂରି ।
ବାଳକ ବାଳିକା    ଯୁବା ଯଉବନା
ଥବିର ପ୍ରଉଢ଼ ଜନ,
ଥିରେ କାନ ଡେରି    ରହନ୍ତି ପୁଲକେ
ଖେନ୍ତୁ ସେ ଥାଏ ତୋ ସ୍ୱନ ।

କି ମନ୍ତ୍ର ପଢ଼ନ୍ତୁ    ପିକ କାନେ କାନେ
କହନ୍ତୁ କି ଗୁପତ ବାଣୀ,
ଅବୁଝା ଆଳାପେ    ଏତେ ମଜ୍ଜିବାର
ହେତୁ ମୁଁ ନ ପାରେ ଜାଣି ।
ସାରା ମଞ୍ଚେ ଏତେ    ଯା ଲାଗି ପରାଣେ
ଉପୁଜେ ପିରତି ମାୟା,
ଏ ଜୀବନେ ମୋର    ଜଣିକାଏ ଯେବେ
ବୁଝନ୍ତି ତହୁଁ ମୁଁ ଆଦା !

ଗାଅ ଗାଅ, ପିକ, ତରୁ ଶାଖେ ଲୁଚି
ଗାଅ ତୋ ପରାଣ-ଗୀତ,
ବରଷକ ଅନ୍ତେ ଡାକଦେ ପୁଣି ରେ
ତୋ ଚିର ଉତ୍ଫୁଲ୍ଲ ପ୍ରୀତି ।
ଜଳ କଳ-ତାନେ, ସମୀର ମର୍ମରେ,
ପାହାନ୍ତ ତପନ ତେଜେ,
ମିଶି ଯାଉ ଯାଇ ତୋ ଗୀତ ମାଧୁର୍ଯ୍ୟ
ସୁବର୍ଣ୍ଣ ବାଲୁକା-ଶେଯେ ।
କୁହୁ କୁହୁ ଉଠୁ, ବନର କୋଇଲି,
ତୋ ତାନ ପଞ୍ଚମ ଡେଙ୍ଘ,
ବନ୍ଧୁ ବାଂନ ଖେଳ ପଥ କଣଳସ୍ତେ
ପରଶଲଭ୍ୟ ସେ ଦେହଜ ।
ସୁମନ ସୁବାସେ ପଥ ଶ୍ୟାମ ବାସେ
ନିକୁଞ୍ଜ ନିଭୃତେ ଲୁଚି,
ରେ ସରଗ ଦୂତ ! ଡାକ ତୋ କାକଳି
ବୃଥା ନୋହୁ ପଛେ କଣ୍ଠ ।
ଗାଅ ଗାଅ, ପିକ, ବସି ତରୁକୁଞ୍ଜେ
ଗାଅ ତୋ ପରାଣ-ଗୀତ,
ବରଷକ ଅନ୍ତେ ଡାକଦେ ପୁଣି ରେ
ତୋ ନିତ୍ୟ ମୋହନ ପ୍ରୀତି ।



# ଯାଆ ଲୋ ଭଗିନୀ *

ନିତି ନିତି ସ୍ନେହକଥା ପଡ଼ୁଛନ୍ତି ପୁଣି,
କି କହିବି, ଭଗିନି ଲୋ, ନ ପାରଇ ଜାଣି ?
ଅବିରଳ ଧାରେ ନେତ୍ରୁ ଛାଡ଼ୁଅଛି ବାରି;
ମଉନେ ରହୁଛି ବସି ହୃଦୟେ କି ଘାରି ।
ଯତନେ ବସାଇ କୋଳେ ପାଳନ୍ତି ନିରତେ,
ସେନେହ ଆଦର ସଦା କରନ୍ତି ଯେ କେତେ,
ଗ୍ଳଲ ସେ ଜନନୀ ଆଜ ଯାଇଛନ୍ତି କାହିଁ;
ସେ ସୁଖ ସେନେହ ଏବେ ମିଳେ ଆଉ ନାହିଁ ।
ବୟସେ ବାଳୁତ ତୁ ଯେ ପାରିବୁ କି ବୁଝି,
କେବଣ ରାଇଜେ ଗଲେ ଏସବୁ ବରଜି ?

---

* କବିଙ୍କର ପିତାମାତା ଦୁଇଦିନ ଛଡ଼ାରେ ହଇଜା ରୋଗରେ ମରିଗଲେ । ଭଉଣୀଟି ସେତେବେଳେ ନିତାନ୍ତ ପିଲା ହୋଇଥିଲା । ସେ ମଧ୍ୟ ଦୁଇବର୍ଷ ପରେ ମରିଗଲା । ବାଣପୁର ଅଞ୍ଚଳରେ ଗାଁ ପାଖରେ ଜଙ୍ଗଲ ଥିବାରୁ ସାଧାରଣତଃ ଲୋକେ ଅନ୍ଧାରରେ ଘରୁ ଏକା ବାହାରନ୍ତି ନାହିଁ । ବାଘ ଗାଁ ଭିତରକୁ ଆସନ୍ତି, ସେଥି ଗୁହାଳରେ ବନ୍ଧି ରଖନ୍ତି । ହଇଜା ସମୟରେ ସନ୍ଧ୍ୟାବେଳକୁ ଲୋକଙ୍କର ତାଟି କବାଟ ପଡ଼ିଯାଏ । କେତେକ ଅଞ୍ଚଳରେ ବ୍ରାହ୍ମଣଘରେ ବାପାଙ୍କୁ 'ନନା' ଓ ମାଆଙ୍କୁ 'ବୋଉ' ବୋଲି ଡାକନ୍ତି । କବିଙ୍କ ଭଉଣୀ, ବୟସରେ ତାଙ୍କଠାରୁ ଆଠବର୍ଷ ସାନ ଥିଲା ।

ଏତେ ସୁଖ ସମ୍ପଦ ଯେ ଏ ଜୀର୍ଣ୍ଣ କୁଟୀରେ,
କେମନ୍ତେ ମୁ ଛୁଟି ଦେଇ ଚାଲିଗଲେ ଧୀରେ ?
ସ୍ମରଣ ଅଗ୍ରୁ ଭବ ଲୀଳାଖେଳା ସାରି,
କେଉଁ ଦୂରଦେଶେ ନନା ଯାଇଥିଲେ ଚାଲି ।
ଛୋଟ ମୋର ହାତ ଧରି ଅଧେ ବାଟ ନେଇ,
ସଞ୍ଜବେଳେ ଘରେ ଆଉ ଫେରିବେଟି ନାହିଁ ।
କଏ ଆଣି କୋରା ଫେଣା ଖାକର କଦଳୀ,
ଆଉ ଏବେ ଆଦରରେ ନେଇ ହାତେ ଦେବ ଭରି ?
ନନା ବୋଲି କାହା ପାଶେ ଛୁଟିଯିବା ଯାଇ,
କାହା କଥା ପଦକକୁ ରହିଥିବା ଚାହିଁ ?
ସବୁ ଆହା ନିମିଷକେ ହୃଦପୁ ଭସୋଇ,
କେଉଁଦୂରେ କାହିଁ ଆଜ ଯାଇଛନ୍ତି ଚାଲି ?

ଏବେ ଦୁଇଦିନ ନନା ନ ଆସିଲେ ଯଦି,
ଭଗ୍ନରଳି ବାହୁଡ଼ି ସେ ନ ଆସିବେ ଆଜ ।
ବୋଉ କୋଳେ ଯାଇ ତହୁଁ ବସି ନିରଜନେ,
ଦିନ ଦୁଇ କଟାଇଲି ଏ କୁଟୀର କୋଣେ ।
ସେହୁ ପୁଣି ଯତ୍ନେ ପଟେ ତେଜି ଏ ସକଳ,
କେଉଁଦେଶେ ଚାଲି ଆହା ଗଲା ଚିର ତରେ ।
ଯେବଣ ଗ୍ରାଲିକେ ବେନ ଯାଇଛନ୍ତି ଚାଲି,
ସେଥୁ ଏ ମରତେ କେହି ଆସଇ କି ଫେରି ?
ବନ୍ଧୁ କର୍ଣ୍ଣ ଦିନରାତି ଶୁଣନ୍ତି ଯେ ଛୁଟି,
ତାଙ୍କୁହି ନୟୂନୁ ବାଣ ସେହି କଥା କହି ?

ଯେତେ ଯେତେ ଗଳ୍ପକଥା ଦଅଛୁ ବସୋଉ,
ଝମ୍ପଥେଁ ବାହୁନ ଆଜ ହୁଅନାହିଁ ଭଲ ।
ଯାଛାଲେ ଏକ୍ଷଣି ରକ୍ତ ବୁଢ଼ିଯିବ ଗରେ,
ଅନ୍ଧକାର ଘୋଟିଯିବ ବାଟେ ଘାଟେ ଦରେ ।
ତା ପାଇଁ ତୁ ଯାଅ ଏବେ, ରଖ ଧୂପ ଜାଳ,
କାଠ ହାଣ୍ଡି ଯାଇ ମୁଣ୍ଡି ଆଣିବ ସଜାଡ଼ି ।
ଭୁଞ୍ଜ ମୁଣ୍ଡି ମିଷ୍ଟ ଦୁହେଁ ସନ୍ଧ ବାତି ଥାପେ,
ସଞ୍ଜବେଳୁ ଖାଇଦେଇ ଶୋଇବା ମେଳାପେ ।
ବେଶି ହୋଇଗଲେ ରାତି, ମାଡ଼ିବଟି ଡର,
ବାଡ଼ିଦ୍ୱାରେ ରାବଦେବେ ଶଲୁଆ କୁକୁର ।
ଗଛଡାଳେ ବସି ପେଚ୍ଚ ରାବ କ୍ଷଣୁ କ୍ଷଣେ,
କେତେ ଡରକଥା ଆଣି ପକାଇବ ମନେ ।
ନିଶା ଗରଜନେ ଧରି କରାଳ ମୂରତି,
ଭୂତ ପ୍ରେତ ଆସି କେତେ ବିଚରିବେ ଏଥି ।
ଯାଆ, ଲୋ ଭଗିନ, ତେଜ ସକଳ ଭାଳେଣି,
ସେହିକଥା ଆସି କପାଁ ପଚାରୁଛୁ ପୁଣି ?
ଯିବାର ସମୟ ଯାହା ଯାଏ ଥରେ ହଜି,
ଏ ମରତେ କେ ପୁଣି ଲୋ ପାଏ ତାକୁ ଖୋଜ ?



# ଏକାକୀ

ବଢ଼ ବେନ ଋତୁ, ପରଶ ପୁଲକେ
ଝସ୍ସ ବରଷାରେ ଭନ୍ଧ,
ଏ ମହୀମଣ୍ଡଳ ତରୁ ଲତା ମେଳେ
ଶ୍ୟାମଳ ସମ୍ପଦ ବନ୍ଧ ।
ମଳୀ ପାଣିଟିକ ପିଉଥାଅ ସୁଖେ,
ଧୀର ସମୀରଣେ ଖେଳ,
ଏନେ ଏ ଭୂବନ ଅନନ୍ତ ଛପିନେ
କରିବ ସୋହାଗ କେଳ ।
ଏ ସୁଖେ ଆହା ସେ ଭାଗୀ ହୋଇଥାନ୍ତା,
ଭୁଞ୍ଜି ଏ ସରଗ-ନିଧି,
ଶୀତଳ ମଳୟେ ଯାଉଥାନ୍ତା ଚଳ
ବାମ ଯାହା ହେଲା ବିଧି ।

କେତେ ଯେ ଆଦରେ ନେଉଁ, ବନ୍ଧୁ, ମୋରେ
ଦେଖାଅ ମୋହନ ଶିଖା,
ଗୋଟି ଗୋଟି ହୋଇ ତିନ ପାଦପ ଟେଣ୍ଟ
ମେଳେ ଜଳୁଥାନ୍ତ କେଳ ।

ଗୋଟିକର ଆହା ସେ ସୁଧା ଆସନ
ଶୂନ୍ୟ ଯେ ହୋଇଛି ଆଜ,
ଜଳ ସ୍ଥଳ ନଭ ଅନନ୍ତ ଜଗତେ
କାହିଁ ସେ ନ ମିଳେ ଖୋଜ ।
କ ମଧୁ ମେଳାପେ ରହୁ ଅବରତେ
ଏଥି ତିନ ସହଚର,
ବାନ୍ଧୁତ ବସ୍ତୁସେ, ଏକ ଆନ ସାଥେ,
ଛନ୍ଦାଛନ୍ଦ ହେଲେ କର ।
ସେ ସୁଧା ବସ୍ତୁସୁ ପଲକ ମାତର
ଫେର କ ଆସିବ ଆଉ ?
ଏ ସୁଖ ସଙ୍ଗ ଯେ ତେଜଗଲା ଏକ
ତାକୁ କେ ପାଇବ କାହୁଁ ?
ତୁମେ କେନ ଏବେ ବଡ଼ିକ ନକର
ଏକ ଆନ ପାଶେ ରହୁ,
ଜଗତ ଅକ୍ଷୟ ଶିଶୁ ସଉରଭ
ଅଙ୍ଗ ଲତିକାରେ ବନ୍ଧୁ ।
ଜୀବନେ କେନ ସେ ବିଚ୍ଛେଦ ଭାବନା
ନାହି କ ନହେବ ଧ୍ୟାନ,—
ସେ ଯେଉଁ ଚତୁଟି ତେଜ ଏ ମେଳାପ
ଗଲା କେଉଁ ଦେଶେ ଚୂଳି ।
ସେ ଦୂର ରାଇଜେ ଏକାକୀ ସଖା ସେ
ଅନନ୍ତ ଦଣ୍ଡ, ବିତାନେ,
ଆପଣା ଜନ ସ୍ମୃତି ତାଳ ଦେଇ
ରହିଥିବ ଅନୁକ୍ଷଣେ ।

ଦୂରେ ପାଶେ କବା ଅଛଇ ଅନ୍ତର
ଜଗତେ ଯେ ଯାର କଣା ?
ଘଟଣେ ଘଟଣ ସେନେହ ପୀରତ
ହୃଦେ ହୃଦ ବନ୍ଧା ଗିନା ।
ଏଥିପାଇଁ କାହିଁ ଭାବନା, ବନ୍ଧୁ ହେ,
ଏ ବୃଥା ନୟନ-ଧାର ?
ତୁମର ସମ୍ପଦେ ପୂର୍ବ ଯେ ରହିଛୁ
ଜଳ ସ୍ଥଳ ବଣୁସାର ।



# ଭାଇ

ମରଣେ ମୁଦିଛି ନୟନ ଯୁଗଳ
ଅନ୍ତିମ ତଳପେ ଶୋଇଛି ଭାଇ,
ସୋଦର-ଜନତା- ତନୟ ସେନେହେ
ପରଶୁ ନିଠୁରେ ବିସୋରି ଦେଇ ।

କୁଟୀରୁ ଅନ୍ତର କରିନେଇ ଶବ
ଶ୍ମଶାନେ ଦେବେ ସେ ତା ତନୁ ଜାଳି,
ପ୍ରତିବାସୀ ଚିର ହୃଦ ଦେନା ଦେନ
ନିରଦୟ ଚିତା ଅନଳେ-ଢାଳି ।

ତନୟ-ଜନତା- କରୁଣ ବିଳାପେ
ପୂରିଛି ତାପିତ କୁଟୀର ସାରା,
ନିତି ଯହିଁ ଖେଳେ ସ୍ନେହ ସୁଧା ହାସ;
ବହେ ଆଜ ଶୋକ ଲୋତକ ଧାରା ।

ଭାଇଟି ମାରିବେ ଠିଆ ହୋଇ ପାଶେ,
ଉଦାସେ କି ଅବା ଭାଳଇ ମନେ;
ଯୁଗଳ ଜୀବନେ କେତେ ତ କାନ୍ଦିଛି,
ଲୁହବନ୍ଦ ଆଜ ନାହିଁ ନୟନେ ।

କରମେ ଭରମେ,	ଶୟନେ ସପନେ
    ଗାଇଟି ଏକା ଯେ ଧିଆନ ତାର;
ମୋହନ କବେଶେ	ବୁହାଇଛୁ ହୃଦେ
    ସୋଦର କସର୍ଗ ସେନେହ ଧାର ।

ଅଧିକୁ ଅଧିକ	ବଢ଼ଇ ବଳାପ;
    ଜଣୁ ଜଣେ ଶୋକେ କାନ୍ଦଇ ଆସି;
ଗାଇଟି ମାରବେ	ଦୋଇଛୁ ଠିଆ ତ,
    ଭନ୍ଦୁ ବାଣ ନେଷେ ନ ଉଠେ ଗାସି ।

ପ୍ରତିବାସୀ ଜନେ	ଉଠାଇ ଶବଟି,
    କୁଟୀରୁ ଅନ୍ତର କଲେକ ତର୍ହୁଁ,
ଅଶ୍ରୁମାଟରେ ଗଲ	ଭିନ୍ଦୁ ଗାଇ-ତନୁ—
    "କା ଲାଗି, ଗାଇ, ଏ କୁଟୀର ଆଜ ?"



# ବକୁଳବନ

ତରୁଲତା-କୁଞ୍ଜେ ତରୁଲତା କି ମୁଁ
ରହିଛି ନୀରବେ ବସି,
ପଷଗନ୍ଧର୍ବ ଏ ଗୀତ-ମଧୁଧାର
ଗୁଞ୍ଜରେ ପବଣେ ପଶି ।

ପଲ୍ଲବ ପରଶେ ଆସି ସମୀରଣ
ଛୁଇଁ ଯାଏ ତରୁଲତା,
ଗୁଲଗଲ୍ପବେଳେ କହିଯାଏ କେତେ
ହୃଦୟଗୁପତ-କଥା ।

ପଥ-ଲଣ୍ଠକାର ଶ୍ୟାମଳ ସେନେହେ
ଡଳଇ କନକ ଫୁଲ,
ବିପିନ ସମ୍ପଦ ବାଛି ଭର୍ତ୍ତି କରି
ସାର ବନ ଦେଖୁଁ ଠୁଳ ।

ତରୁ ଲତା-କୁଞ୍ଜେ ବସିଛି ଧୀରେ ମୁଁ,
ଆଜ ତରୁଲତା ପରି;
ତରୁଲତା ଅଙ୍ଗୁ ପଡ଼ୁଛି ମୋ ଅଙ୍ଗେ
ମଳୟେ ସୁମନ ଝଡ଼ ।

ଊଷା ବିମୋହନ ଝନକ ବିତାନେ
ଏ କିବା ସରଗ ଶୋଭା,
ନିଶୀଥ-ସୁନ୍ଦରୀ ବିଧୁ ଦ୍ରୁମ ଶିଖ
ଅନନ୍ତ ରଜତ ସ୍ତୂପା ।

ପୂନମ ଯାମିନୀ ପୂର୍ଣ୍ଣ ନିଶାମଣି-
ବଦନ-ସମ୍ପଦେ ବଳି,
କୁଞ୍ଜ କୁଞ୍ଜେ ଆଭା ଏ ଶିଶୁସକଳ
କି ଭାବେ ଅଛନ୍ତି ଭରି !

ଫୁଲର କେଶରେ ଫୁଲ ରେଣୁ ହୋଇ
ନିମିଷେ ଯାଆନ୍ତି ମିଶି,
ଅଳିଦଳ ମଧୁ- ଗୁଞ୍ଜନେ ସରବେ
ଫୁଲେ ବିହରନ୍ତି ଆସି ।

ପଲ୍ଲବ ଉଡ଼ାଳେ ସୁଖେ ଗାଉଥିବା
ପିକ ପଞ୍ଚମକୁ ଜିଣି,
ଶିଶୁ-କଣ୍ଠ-ରୋଳେ ଭରି ସେ ଦିଅନ୍ତି
ଏ ସ୍ନିଗ୍ଧ କାନନ ଭୂମି ।

ଏ ମଧୁ ମିଳନେ ଲଭେ ମୁଁ ତ ମୋର
ପରାଣ ପରଶ ଧନ,
ଆନ ଦେଶେ କାହିଁ ପିବ ମୁଁ ଜୀବନେ,
ତେଜି ଏ ବକୁଳ ବନ ?

ଏ ଗୁରୁ ଆଶ୍ରମେ ଗୁରୁପୀଠୁଁ ମୁହିଁ
ସାଧିବ କରମ ମୁଦେ,
ବନ୍ଧୁବ ଏ ଯେତେ ଜଣୁଁ ଜଣେ ଶିଷ୍ୟ
ପିଅର ସେନେହେ ହୃଦେ ।

ମାଗି ମୋ ନେଲଣି ଜୀବନ-ସାୟାହ୍ନେ
ମୃଦଙ୍ଗେ ମୁଁ ନେଇ ବେଳ,
ଏ ଭୂମିର ମାଟି ମାଟିରେ ମିଶାଇ
ରଖିବ ମୋ ତନୁ ଭେଳ ।

ମୂଳେ ସତ୍ତ୍ୱ ମୋର ମିଶି, ପେଶି ରସ
ସଞ୍ଚରିବ ଡାଳଚୟେ;
ତରୁ ଲତା ଅଙ୍ଗେ ଫୁଟିବ ପଲ୍ଲବ,
କଢ଼ି, ଫୁଲ, ଫଳଚୟେ ।



# ବିକଳକଣ୍ଠ କୋଇଲି *

ପ୍ରତୀଚୀ ଭୂଧର-ସ୍ଥଳେ ଉଚ୍ଚ ଉଚ୍ଚ ଉଚ୍ଚ,
କନକେ ଶଖାନ୍ତ ବନ ବୃନ୍ତ ଶ୍ୟାମ ଛବି ।
ଛନ୍ଦୁଛନ୍ଦୁ ଛନ୍ଦୁଳୁ ଜଳ, ବିହଗ ନିକର
ଉସାଇ ଉଦାନ୍ତ ଏବା ଶେଷ କଣ୍ଠସ୍ୱର ।
କୁହୁ କୁହୁ ରବେ ଧୀରେ ବହଇ ତଟିନୀ,
କାନନ ଉଦାନ୍ତ ହୃଦ ପ୍ରୀତି ଗାଥା ଘେନ ।
ଏ ସକଳେ ସକଳରୁ ମଧୁର ଆହୁରି
ଡାକେ ଡାକେ ପିକଗାନ ବନଦେଶ ପୂରି ।
କହୁଦନ୍ ଛେଳ ମୋର ହୃଦନ ଅବନୀ,
ଏ ବସନେ ପିକକଣ୍ଠ ନ ଥିଲି ମୁଁ ଶୁଣି ।

---

* ସିଂହଭୂମି ଜିଲ୍ଲା ଚକ୍ରଧରପୁର ନିକଟରେ, ସଂଯୋଗ ନଦୀ କୂଳରେ 'କେଉଁ' ଗ୍ରାମ । ସ୍ଥିରପଟେ କେତେଗୁଡ଼ିଏ ଆମ୍ରତୋଟା ଅଛି । କୋଇଲି ଚକ୍ରଧରପୁରରେ କ୍ୱଚିତ୍ ରବେ । କିନ୍ତୁ ତା ରବ କେଉଁରେ ଶୁଣାଯାଏ । କୋଇଲିକଣ୍ଠର ରବ ବିଷୟରେ କବିଙ୍କ ମତ, ସତ୍ୟବାଦୀ ତୁଳନାରେ, ବାଣପୁର ଅଧିକ 'ହୃଦବ ଅବନୀ' । କାରଣ ବାଣପୁରରେ ସେ ବାଲ୍ୟଜୀବନ ଅତିପାତ କରିଥିଲେ ।

ନମିଷେ ଆଜ ଏ ଚାନେ ପଡ଼ୁଛି ଚମକ —
କି ସ୍ୱଇଜେ ଅଜାଣତେ ଉଗ୍ର ମୂର୍ଦ୍ଧ ନକ !
କୁହୁସ୍ୱନେ ବନଦେଶ ଉଠଇ ଉଚ୍ଛୁଳ,
.ପ୍ରତି କୁହୁ ଆସେ, ପ୍ରତି ଗିରିକୁଞ୍ଜୁ ଫେର ।

ସକଳ କୋକଳ ମେଳେ ନବସି ଉଡ଼ାଳେ,
କୋଇଲି ଏକଳକଣୁ ଗାଏ ଚୂତ ଡାଳେ ।
ଗାଇ ବନସାରା ସ୍ୱର ପଡ଼ିଛି ଗଳିଣି,
ଛେବେ ହେଲେ, ଲଭେନାହିଁ ସେଧେ କଣୁବାଣୀ ।
ଷ୍ଟସାରା ଅବସରେ ମାଜିବ ସେ ସ୍ୱର,
ପ୍ରାଚେ ପୁଣି ଡାଳବାକୁ ପଞ୍ଚମ ହିଲ୍ଲୋଳ ।
ହେଉଲ, ଆଜ ଏ ସାମ୍ରାଜ୍ୟ ସମ୍ପଦ ଭଣ୍ଡାରେ
ଏକ କୁହୁ ତାନ ଖଣ୍ଡ ହରଇବ କାଲେ,
ସେ ଲାଗି ଏ କୋଇଲଟି ଚେଜ ହୁନୁମାନ,
ଡାକୁଅଛି ଭରୁଡାଳେ ତା ଏକଳ ତାନ ।
କାନନ-ସମ୍ପଦ ଲଭେ ନୋହୁଅଛି ଊଣା,
ଅଧିକୁ ଅଧିକ ବଢ଼ି ଗୀତ ସୁଖସୀମା ।

ଏଣୁକ୍ଷଣି ଅନ୍ଧକାରେ ଘୋଟିପିବ ଧରା,
ଭଙ୍ଗାସ୍ୱର ଗଢ଼ିବାରେ ଲାଗିପିବୁ ପର ।
ଆଉ କେବ ଧାର୍ତ୍ତି ଏକ୍ଷେ ଗାଇଥା, କୋଇଲି,
ପିକ କୁହୁ ପାସବାରେ ଡେଇଟି ତୋ ତାଳି ।
ଲେଣ୍ଡ଼ ଡାଳେ ଡାଳେ ରଖ, ରେ ବନ ଲତିକା,
ରଜେ ରଜେ ଭର, ଫୁଲ-ସୁରଭି-କଣିକା ।

ଦୂରୁ ଦୂରେ କମ୍ବୁନଞ୍ଚ, ସଂଯୋଇ ସନ୍ଧାନ,"
କାଳବେଳେ ମିଶାଇ ଏ ଅର୍ଦ୍ଧ କୁହୁ ସ୍ୱର ।
ଫର୍ଣ୍ଣି କେସ୍ୱ ବଇଭୂବେ ବଡ଼ଦେଇ ଉଠେ,
ପୂରି ତନ୍ଧରପୁର ଏ ଝଳକ ସବେଁ ।
ଶୁଣିବେ ଅପୂର୍ବେ ଯେତେ ଚଳ ପଦା ବନ,
ଆକସ୍ମିକ ଧନେ ଧନ୍ୟ କରିବେ ଜୀବନ ।
ବିଶ୍ୱବ୍ରତେ ନୂପ ସମ୍ପଦ ସମ୍ପାଦିଛୁ ବଧି,
ବିଶ୍ୱ ପ୍ରତିସ୍ପୃତରେ ଦେବ ମିଳାଇ ଯେ ନିଧି ।



# ସଖା *

ଏଣ୍ଠି ସେ ନିକୁଞ୍ଜ ତଳ ମୃଦୁ ଗୁଳ୍ମା ପରଶେ,
ନିମିଷ ମଜ୍ଜନ ଶୃଙ୍ଗେ ଖେଳ ଉଠ ନିମେଷେ ।
ପାଦପ-ସରସ-ଶାଖେ ବସି ସୁଖେ କୋଇଲି,
ଅଦେହ ଅମୃତ-ଧାର ବନେ ଢାଳଇ ତା'ନ ।
ଉଡ଼ ଉଡ଼ ଉଡ଼ ବେଳେ ଦୂର କାନନ ଛାଡ଼,
ଡଳଇ କାନନ କବା ଶ୍ୟାମ ଶ୍ରୀଅଙ୍ଗେ ଲକ୍ଷ୍ମ ।
ଗୋଷ୍ଟି ଗୋଷ୍ଟି ତା'ଙ୍କୁ ଡାକୁ ଫୁଲ ଦେଉଇ ଝୁଣ୍ଡ,
ସୁବର୍ଣ୍ଣ ଆସନେ ବନ ଦୁର୍ବା ଘରାନ ବାଡ଼ି ।

ବହ, ରେ ସମୀର ଧାର, ଆସ ପୁଲକେ ବନ୍ଧୁ;
ଏ ଚତୁଲକଣ୍ଠା ଯାଅ ପ୍ରୀତି ପରଶେ ଛୁଇଁ ।
ଚଳଯାଉ ନମିଷକ ସୁଖସାମ୍ରାଜ୍ଞ ଖେଳେ,
ଏ ସ୍ୱଧା ଶାଖାନ୍ତି ପୋଚ ସ୍ୱର୍ଣ୍ଣ ଅକଳଙ୍କତଳେ ।

---

* ଗଞ୍ଜାମ ଜିଲ୍ଲା ଛତ୍ରପୁରରେ ରହୁଥିବା କବିଙ୍କର ଜଣେ ସଙ୍ଗୀ ସତ୍ୟବାଦୀ ଆସି ଫେରିଲା ପରେ ଏ ପଦ୍ୟ ଲେଖାହୋଇଛି । ଛତ୍ରପୁର ସମୁଦ୍ର କୂଳରେ । ମାତ୍ର ଦୁହିଁଙ୍କ ଭିତରେ ଗୋଟାଏ ବଡ଼ ଦହ ଅଛି । ଦହର ଏକ ପାଖରେ ଝାଉଁବଣ ଓ ଅନ୍ୟ ପାଖରେ କୈତକୀବନ । ସେ କେତକୀବନରେ ସାପ ଥାନ୍ତି । ଦୁଇଟି ସାପ ବେଳେବେଳେ ପରସ୍ପର ସଙ୍ଗତ ଖେଳିବାର ଦେଖାଯାଏ । କେରଣ୍ଡିମାଳ ପର୍ବତ ଛତ୍ରପୁରରୁ ଦଶ, ବାର କୋଶ ଦୂରରେ ।

ଦୁଇଟି ବର୍ଷଁର ଜଳ ଭୋଳ ସେବନ ମୁଖେ,
ଆନ ଦୁଇ ବଣଲସ୍ଥ ଆଜ ଖେଳାଏ ସୁଖେ ।

କାହିଁ ଗଲ ? ଆଜ କେଉଁ ଦୂର ସ୍ଥଳେ ରହି,
ଏ ସୁଧା ସମ୍ପଦ, ସଖା, କାରେ ଦେଲ ନାହିଁ ।
ସେନେହ ସଙ୍କୋଚଭରେ ଧୀରେ ବଢ଼ାଇ କର,
ପରଶିଲ ନାହିଁ ଅଙ୍ଗ ଡାଳପଚରଫୁଲ ।
କୁସୁମ-ପରାଗ ଭୁଲେ ଢଳ ନୟନବାଣ,
ନିମିଷେ ଦେଖିଲ ନାହିଁ ଏହି ନିସର୍ଗ ଶିଶ୍ର ।
ଅଧର ଅଧରେ ସୁଖେ ବାଣୀ ବଦନ୍ତୁ ଫେଇ !
ଏ କୁଞ୍ଜ ସନ୍ଧିରେ ପଦେ କଥା ହେଲ ଯେ ନାହିଁ ।
କେତେ ଦେନା ଦେନ ଆହା ବନ ଭଜନେ ବସି,
ଦୁଇଟି ପରାଣୀ ସେ ଯେ ସୁଖ ସୋହାଗେ ହସି ।
ଆଜି ଜଣେ କେତେ ଦୂରେ; ଆନ ସ୍ଥଳେ କାହିଁ;
ଏ ବନ ନଗମେ ଏକା ମୁହିଁ ଅଛଇ ଗୃହିଁ ।
ରହ ରହ, ସଖା, ସୁଖେ, ଯହିଁ ଯାଇଛ ଚାଲି,
ଯୁଗଳ ହିଦବ ମେଳେ ଦ୍ବନ୍ଦ ତରଙ୍ଗ ତାଳି
ସାଗର ସୈକତ ପୁଷ୍ପ ପ୍ରୀତି କରମବାସେ
ସକାଳ ସାୟାହ୍ନ ନିତ ଯାପ ପରାଣ ହାସେ ।
ବାଞ୍ଛିତ ସମ୍ପଦ ଯେତେ ଦେନ ହରଷଭରେ,
ସୁଖ ଶିଶ୍ର ଭୁଞ୍ଜୁଥାଅ ସ୍ବଚ୍ଛ କନକପୁରେ ।
ଉଷାକୋଳେ ହେମ ସ୍ବରେ ଉଇଁ ନଜଠୁ ରଢ,
ଦେନ୍ତୁ ଥାଅ ଯାଇ ନିତ ନିତ୍ୟ ମୋହନ ଛବ ।

ଉରଗ ଯୁଗଳ କେଳି ହେରି କେତକୀମାନେ,
ମିଳିଥାଅ ହବ ଚାପେ ଘର୍ଦ୍ଧ ସରସୀଙ୍ଗରେ,
ନଳିକା ବନ୍ଧୁନେ ଆଶା ତେଜି ହେବାର ପାର,
ଅତୃପ୍ତ ତୃପତେ ଭଳି ଆସ ମଜ୍ଜନେ ଫେର;
ବୁଲି ବୁଲି ପଛେ ଶ୍ୟାମ ଝାଉଁବନେ ଉଡ଼ାଲେ,
ରହୁଁ ଥାଅ ଦୂରେ ନୀଳ ମହୋଦଧି ତୀରେ,
ସୁନୀଳ ସମ୍ପଦେ ଖେଳ ରଚ୍ଛ ତରଙ୍ଗବେଣୀ,
ଶିର ସଇକେତେ ନଈ ଯାଉଥିବ ନେଇ ପୁଣି,
ମୃଦୁଳ ମଳୟେ ମଧୁ ସିନ୍ଧୁ ସମୀର ବାର,
ବନ୍ଧୁବାର ଅପତନେ ହୁଅ ହୃଦୟେ ଭାର,
ତେଜି ଥରେ ଅନ୍ତରୁଁ ହେ ଶ୍ରମନିଶ୍ୱାସ-ଧାର,
ସ୍ପୃଶୁଥାଅ ପଞ୍ଚତୋଷେ,—'ଆଜ ନୋହୁଲ ପର';
ଗଛ ଗୁଳତଳେ ବସି, ଅଙ୍ଗୁ ଶୁଖାଇ ଝାଳ,
ଆନ ପଦକ୍ଷେପେ ପୁଣି ଯାଇ କୁଟୀରେ ମିଳ।
କରମ୍ଭ ବରମ ଲଭି କେବେ ଧନେକ ଯାଇ,
ଶ୍ୟାମଳ କେତକୀମାନେ ବୁଲି ହରଷେ ଖାଇ।
ସେ ଏକ ସରଗଶିଷ ଦୂର ରଇଜେ ସେଥି,
ଏ ଯେ ପୁଣି ଆନ ଭୂଇଁ ସମ ସମ୍ପଦେ ଏଥି।

ରହ, ରେ ନିକୁଞ୍ଜ ଶାଖା ପତ୍ର କୁସୁମପନ୍ତି,
ଯାଉଛୁ ମେଲାଣି ନେଇ; ହେଇ ଆସଇ ଗାଡ଼ି।
ଏ ସମ୍ପଦ ନିତି ନିତି ପୂରୁ ଏ ସ୍ଥାନେ ଥାଉ;
ରଙ୍ଗ ବୁଡ଼ିଯାଉ ନାହିଁ, ଶୀତ ସମୀର ବହୁ।
ସଖାଙ୍କ ଯୁଗଳ ହୃଦ, ଦୂର ଉପାନ୍ତ ଭର,
ସ୍ୱଦେଶେ କି ଏ ବିଦେଶ ନିଧି ଦେବ ବିସୋରି !



# ଏହି କଥାଟିକ

ଝୁଲେ ବସି ଗଣୁଥିଲି ଏକାକୀ କୁଆଟି,
ଘନ ଘନ ଡାକେ କଣ୍ଠ ପିକ କି ତା ପାଟି !
ବାଳୁତ ହୃଦୟ ଶିଶୁ ବାଡ଼ି ଅଗଣନେ,
ଅଧର ଅମୃତ ହାସ ସଜାଡ଼ି ବଦନେ,
ଏକେ ଆନେ ଲେଡ଼ି ଟିକି ଉଦାସ ପସୂରେ,
ଝୁଲିଗଲେ କେତେ ପିଲା ସେଦ୍ଧି ଗୃଳ ଛଳେ ।
ସଜାଇ ନାହାନ୍ତି କିଛି କନକ ପ୍ରତିମା,
ଛୁଇଁ ନାହିଁ ଦିନେ ହୃଦ ବନ୍ଦେଇ-ସାଧନା,
ସକଳ ସମ୍ପଦ ପ୍ରାଣେ ରଖିଛନ୍ତି ଭରି,
କିବା ଏ ଜଗତେ ତୁମେ ଲୋଡ଼ିବେ ଆଦରି ?

ମୁହିଁ, ଏ ବୟସେ ମୋର ବାଳୁତ ସରାଗେ,
ଝୁଷଲ ମୁଠିଏ ନେଇ ଥୋଇଲି ତା ଆଗେ ।

ବାରେ ହେଲେ ମୁଖେ ଫେଡ ନଗର ପରଶି,
ଯେତେ ମୁଁ ଆଦରେ ତାକୁ କୋଳେଇ ବସି—
"ଆ ଆ ଆ ଆ, ଲୁଆଟିରେ, ଖ ଇପାଫ ବାଟର,
ମନ ତୋଷେ ବସି ପୁଣି ସବୁଥିବୁ ଗୃହେ ।
ବଏ କେତେ ଦୂରେ ମୋର ବାଟ ଘୁଷ କାହିଁ
ଆସୁଛନ୍ତି, କହୁଥିବୁ ଭୁହାଇ ଭୁହାଇ ।"

ଆହା!, କମ୍ପା ସେହ୍ନ କଥ ମନେ ମୋର ପୁଣି,
ତୋ ପାଶେ ଆବର କପାଁ ସେହ୍ନ ମୋ ମାଗୁଣି ?
ନନ୍ତ ନନ୍ତ ସେହ୍ନ କଥା ହେଉଅଛୁ ଭଲ,
ମନର ବେଦନା ମନେ ରହୁଅଛୁ ମାଳ ?
ଲୈଚ ମୁଁ ଯାହାକୁ ଧନେ ଦେଉଛୁ ମେଲଣି,
ଯାଚ କ ଜୀବନେ କେହ୍ନ ଦେଇଯିବ ଆଣି ?
ନ ଜ ହାତେ ଚିତାନଳ ସଜାଇ ଯତନେ,
ଗୋଟି ଗୋଟି ଜାଳ ଆହା ଦେଲି ଏ ଜୀବନେ ।
ଜୀବନୁ ଅଧିକ କରି ଜୀବନ୍ତ ସେନେହେ;
କେତେମନ୍ତେ କେ ମୋତେନି ଧରିଲେ ହୃଦୟେ ।
ଗଲାବେଳେ ନମିଷକ ରଖିଲ ମୁଁ ନାହିଁ,
ଏବେ ଆଉ ଦବାନଳି ଝୁରିବ କପାଁଇଁ ?
ଯିବାର ଯେତେକ ଜଧି ଗଲଣି ତ ଚୁଲି,
ଜୀବନେ ତା ଲାଗି ଆଉ ହେବ କପା ଭଲ ?
ଅନନ୍ତ ଅପୂନ ପାରେ ସୁଦୂରୁ ସୁଦୂରେ,
ମରଣେ ହେବ ମୋ ଯେବେ ଭେଟ ଆଉଥରେ ?

"କହ କୁଆ କହିଯାଅ ମିନତି ମୋ ଘେନ,
ଏକ ବୃନ୍ତେ ଥିବ ଫୁଟି ସୂର୍ଯ୍ୟମୁଖୀ ବେନ;
ଗୋଟିଏ ସେ ଅବଉଚ ରହିଅଛୁ ଚାହିଁ,
ପଗଚୀ ଢଗନ୍ତେ ଉଡ ଉଡ଼ିବାର ପାଇଁ ।
ଆଉଟି ଯେ ଟନାଇଛୁ ଦଉଜ ତା ଗାଟ,
ଦେଖୁଛୁ ଦ୍ରୁଷ୍ଟଚୀ ଶୂନ୍ୟ ବଉସ ଆକାଶ;
ସେହୁ ପୁଣି ଫେଉ ଦିନେ ଆସିବ କ ନାହିଁ,
ଯୁଗଳ ବଦନେ ଉଷ ଅନାଇବା ପାଇଁ ?
କହ କହ, କହି ଯାଅ ଏହି କଥାଟିକ,
ଖାଇ ଯାଅ, କୁଆ, ସୁଖେ ଗୁଡ଼ଜଳମୁଠିକ ।



# ବିଦାୟ *

ଦେଖଇ ଦେଖୁଣି ପଥର ଆଖର,
ଛପଛ ପ୍ରାନ୍ତର ବନ,
କୋମଳ କପାଳେ ଲାଠ ଥିବ ଖସ;
ବାଧିବଣି ପାଦଶ୍ରମ ।

---

* ସତ୍ୟବାଦୀ ବିଦ୍ୟାଳୟର ଅଧିକାଂଶ ଛାତ୍ର, ଅଭ୍ୟସ୍ତ ବାର୍ଷିକ ଭ୍ରମଣରେ ୧୯୧୭ ମସିହା ବସନ୍ତ ଋତୁରେ, ଖୋରଧାବାଟେ, ପଦବ୍ରଜରେ, ଖଣ୍ଡପଡ଼ା ପର୍ଯ୍ୟନ୍ତ ଯାଇଥିଲେ । ସେହି ବିଦ୍ୟାଳୟରେ ଜଣେ ପ୍ରଧାନ ଶିକ୍ଷକ ରହିଥିଲେ ସୁଦ୍ଧା, 'ଆଚାର୍ଯ୍ୟ'ତାର ପ୍ରଧାନ କର୍ତ୍ତୃପକ୍ଷ ଥିଲେ । ତାହାଙ୍କୁହିଁ କୁଳପତି କୁହାଯାଉଥିଲା । ହରିହର ଦାସଙ୍କର ପ୍ରଚଳିତ 'ଆଚାର୍ଯ୍ୟ' ଉପାଧି ସେହିଥିରୁ ଆସିଛି ।

ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କୁ ସକାଳେ ନିଦରୁ ଉଠାଇବା ଲାଗି, ଛାତ୍ରାବାସରେ ଗୋଟିଏ ଘଣ୍ଟା ବାଜୁଥିଲା । ଛାତ୍ରମାନେ ଅନ୍ଧାରରେ ଏକା ଯିବା ଆସିବା କଲାବେଳେ ନିର୍ଜନତା ଦୂର କରିବା ନିମନ୍ତେ ଗୀତ ଗାଉଥିଲେ ।

ସତ୍ୟବାଦୀରୁ ପଦବ୍ରଜରେ ଖଣ୍ଡପଡ଼ା ଗଲେ, ଦୟାନଦୀ, ବରୁଣୀ ପାହାଡ଼, ଖୋରଧା, ବାଘମାରି ନିକଟସ୍ଥ ହଟକେଶ୍ୱର ଉଷ୍ଣ ପ୍ରସ୍ରବଣ ଆଦି ବାଟରେ ପଡ଼େ । ଦୟା ଓ ଭାର୍ଗବୀ ନଦୀ ଦୁଇଟି କୁଆଖାଇରୁ ବାହାରିଛି । ଭାର୍ଗବୀ ସତ୍ୟବାଦୀରୁ ପାଖ । ବରୁଣୀ ପାହାଡ଼ ତଳେ ଖୋରଧାର ସ୍ୱାଧୀନ ରାଜାଙ୍କର ପ୍ରାଚୀନ ଗଡ଼ର ଭଗ୍ନାବଶେଷ ରହିଛି । ପାହାଡ଼ ଉପରେ ଗୋଟିଏ ଗୁମ୍ଫାର ନାମ ପାଣ୍ଡବଘର । ଭଟ୍ଟାରିକା ପାହାଡ଼ ଖଣ୍ଡପଡ଼ାରେ, ମହାନଦୀ କୂଳେ ଅଛି । ଭଟ୍ଟାରିକା ଦେବୀ-ମନ୍ଦିର ସେହି ପାହାଡ଼ରେ । ପାହାଡ଼ରେ ଗୋଟିଏ ଗୁମ୍ଫା ଅଛି । ସେହିଠାରେ ସାତ ଭଉଣୀ ହାଣ ଖାଇଥିବାର ପ୍ରବାଦ ଅଛି ।

ଘୁଲନାହିଁ, ବାବୁ, ନଭୁଲ ଆଉ ହେ,
ଅପରନ୍ତୁ ସେ ସରଣୀ,
ଚୂତ କୁଞ୍ଜ କାହିଁ ଅଶ୍ରେ ରହ ଶର
ନିକୁଞ୍ଜ ସମ୍ଭୋଗ ହେନ ।

ପଶ୍ଚିତ ଏ ଯେ ଭାର୍ଗବୀ ପ୍ରବାହ,
ତାହାର ସୋଦର ଦଗ,
ଦୟାର ସାଗର ସେ ଦୟା ଭୂତଳେ,
ବୁହାଇ ବିମଳ ଧାର ।

ରହି ସେଥି, ବାବୁ, ଯାପି ଏ ମଧ୍ୟାହ୍ନ,
ଶରମ ତପୋର ମନ୍ଦୁ,
ମୁକୁଳ ସୁବାସ ଘୁମ୍ପାଇଲେ ଶୋଇ,
ଶୀତଳ କରେହ ତନୁ ।

ଚଳାଇ ଯାଇଛ କେତେଦୂରେ ଏଥି,
ରହିଛ ବିଦେଶ ପଥେ;
ଜଡ଼ ମୁଁ ଯାଆନ୍ତୁ ଏବେ ପଢ, ସଙ୍ଗେ
ନାହିଁ କ ନଅନ୍ତ ସତେ ?

ଷିଶୁସୁଧା ଧାର ସଜାଡ଼ି ବପିନେ,
କନକ ଚରଣେ ଗୁଲ,
ପିବାର ଅନାଇ ରହିଲ, ନୟନେ
ଶୁଖାଇ ନୟନ ବାରି ।

ଭୂଲପତିଙ୍କି ଯେ ନେଇଛ ସଙ୍ଗରେ
ପିଅଲ ସେନେହେ ଦେନ,
ଯାଣେ ସେ ଯାବତ ଥିବେ, ହେ ପଗଣେ
କେତ କ ଦୁଃଖ ସହେଲେଣି ?

ଗଲବେଳେ ସେହୁ    କହିଲେ ଆବେଗେ
ଅଧର ବିଷାଦ ହାସେ —
“ଦୁଇଦିନ ଯାଇ,    ଅଧ ଉପୁନେ ହେ
ଭେଟିବ ସୁବାସ ବାସେ ।”
‘ନାହିଁ’ ବୋଲିବାର    ନବେଧି ବଚନ
ସଙ୍କେତେ ସମ୍ମତି କହି,
ଫେରି ମୁଁ କୁଟୀରେ    ଆସିଲି ଭୁରତେ,
ରହିଲି ସରଣୀ ଚାହିଁ ।
ଏ ଯେ ଦୁଇଅନା    ତରୁଣ ନିକୁଞ୍ଜ,
ତା ଛାଇ ଅଠୁରି ପଥେ,
ମୋ ନେହ ଭଲତେ    ଲୁଚିଗଲ ରବି
ଗିରି ନଦୀ ଧାରେ ସତେ ।
କେତେ ଦୁଟିଲେ, ବାବୁ,    ସାଙ୍ଗ ସାଥି ମେଳେ
କରୁଛ ବାଳୁତ ଲୀଳା,
ବାସନା-ତୃଷାରେ    ଜାଳି ଚିତାନଳ,
ବସିଛି ଏଥି ମୁଁ ପରା ।
ଅର୍ଦ୍ଧ ପଥେ ଯାଇ    ଭେଟନ୍ତି ଯାହା ସେ
ତେଜନ୍ତି ସୋହାଗ ମନୁ,
ନେହ-ମାଳ-ଧାର    ବୁହାଇ ଝରରେ
ପାଷାଣ କରୁଛି ତନୁ ।
ଯାଅ, ବାବୁ, ଯାଅ    ଏ ଧାନ ସ୍ମୃତିଟି
ବିସ୍ମୃତି-ଗର୍ଭେ ଢାଳି,
ଦେଶୁ ଦେଶାନ୍ତରେ    ଅନ୍ତର ପ୍ରବାହେ
ପିବ ହେ ଜୀବନେ ଖେଳି ।

ବରୁଣୀ ଶିଖର ଶଇଳ ବିପିନେ
ସାୟାହ୍ନ ବିହାରେ ଯାଇ,
ଅଶୋକ-ନିକୁଞ୍ଜେ ନିବସି ମୋ କଥା
ମନେ ପକାଇବ ନାହିଁ ।
ପାଣ୍ଡବ ଢଗର ପାଷାଣ ଢବରେ,
ପାଣ୍ଡବ ସୋଦରପଣେ,
ଗୁରୁ ଶିଷ୍ୟ ସଖା ନମିତେ ପରସ୍ପ
ନିହ୍ନବ ହରଷ ମନେ ।
ବୀର ରକ୍ତେ ଗଢ଼ା ଗଡ଼ ଅବଶେଷ
ମାଡ଼ି ଯ ବଚଳେ ଖେଦେ,
ସ୍ୱଦେଶ ଅଷ୍ଟାଚ କାରଣ ଗ ଥା ଦେ
ସ୍ମର ଦେଇଥିବ ହୃଦେ ।

ମୁଁ କେତେ ବୁଲିଛି ହ୍ରଦ ନଦୀ ତୀରେ,
ପୁର ପଲ୍ଲୀ ଢଲ ବନେ;
ମୋ ଜନମ ଭୂଇଁ ମୋହନ ଭରସେ
ବାଜୁତ ଉଦାସ ମନେ ।
ବନ ଫଳମୂଳେ ଏଡ଼ି ସୁଖେ କ୍ଷୁଧା,
ପିଇଛି ଝରଣା ନୀର,
ତରୁ ତଳେ ଶୋଇ ଦେଖିଛି ସପନ,
ଶିଳା ପୀଠେ ଥାପି ଶିର ।
ସୋଲର ଘନଲର ଶ୍ୟାମଳର କାନ୍ତେ,
ଗିରି ଘଣ୍ଟଶିଳା ତଳେ,
କେଉଁ ଶିଳା, କେଉଁ ଲତା ନିକୁଞ୍ଜଟି
ଅଛଇ ଅଜଣା ମୋରେ ?

ଶାଳଆ ସୁବର୍ଣ୍ଣ  ଶେଯେ କ ଅଛଇ
ଏକଇ ସିକତା ରେଣୁ,
ତା ସୁଧା ପ୍ରବାହେ  ବିନ୍ଦୁ ଏ ସଲିଳ
ନ ପରଶି ମୋର ତନୁ ?
ଆଜ ସିନା ଆସି  ରହିଛି, ଏ ହୃଦ
ବିଦେଶ ବିଭବେ ଭାଳି,
ମୋ ସ୍ୱଦେଶ ସିନ୍ଧୁ  କଣିକା ମାତର
ପ୍ରାଣୁ କ ପାଶର ଭୁଲି !

ଦେଖି ଆସ, ବାବୁ,  ଶିଶୁ ନୟନର
ସରଳ ସ୍ନେହର ଧାରେ,
ପ୍ରତି ଶିର ତର  ବନ ଚନ୍ଦ୍ରଲତା
ଲେଖି ହୃଦେ ସ୍ୱର୍ଣ୍ଣ ଗାରେ ।
ବରୁଣୀ ପ୍ରାନ୍ତର  ରସାଳ ନିକୁଞ୍ଜେ
ବିଶ୍ରାମେ ପସଣ ନିତି,
ବସିଥିଲ ବେଳେ,  ଭେଟି ଯେ ଥାଆନ୍ତି—
ଏ ଭାଗ୍ୟେ ଘଟିଲା କାହିଁ ?
ଦୂରୁ ଦୂରେ ପୁଣି  ଯାଅ, ବାବୁ, ବୁଲି
ନବୀନ ପ୍ରବାସ ବାସେ,
ପ୍ରଭାତ ବନ୍ଦନ  ଗ୍ରୀଷ୍ମାତଳେ, କିବା
ରବି ଅସ୍ତମନ ହାସେ ।
ଝରଣା ସଲିଳେ  ଅବଗାହି ତନୁ
ତମସ ତଟକେଶୁରେ,
କଳାଦ୍ରି ବସନେ  ଏଠି ଯେ ଖଗ,
ଫେରୁଥିବ ଦଳ ମାନେ;

ବନ ପଥେ ହାତ ଧରା ଧରି ହୋଇ
ସୁଖେ ବୁଲୁଥିବ ଯହିଁ,
ଅଶାନ୍ତ ଜୀବନେ ଯେତେ ଯା ଘଟିଛି
ଏକେ ଆନେ ସବୁ କହି;
ବନସ୍ତର ବାଘ ଭାଲୁ ସଙ୍ଗେ କାହିଁ
କିଏ ଭେଟିଅଛି କେବେ,
କିଏ କେଉଁବେଳେ ଏଡ଼ିଛି ଆପଦ
କି ଭାବେ କେବଣ ଠାବେ;
ମହାନଦୀ ସ୍ୱର୍ଣ୍ଣ ସଇକତ ଶେଯେ
ପୁଲକେ ଯିବାର ଛଳ,
କ୍ଷୀଣ କଳେବରେ ଚୈତ୍ରେ ମନ୍ଦ ଧାର
ସରଗ ଜାହ୍ନବୀ ବଳ;
ସେହି ମାତ୍ରେ ଯେବେ ପଖାଳ ପୟର,
ସେନେହ ସଙ୍କୋଚ ଭରେ,
ଦେଖିବ ପୁଲକେ ଦେବୀ ଭଟ୍ଟାରିକା
ସନ୍ଧ୍ୟ ଶଇଳ ତଳେ;
ଶିଖରୁ ଶିଖରେ ବୁଲିବ ଗଇଳେ,
ଖେଳାଇ ଶୈଶବ ଧାର,
ଶୁଣିବ ଗହ୍ୱରୁ ସପତ ଭଗିଣୀ
ବିଷାଦ ବଚନ ଭାଷ;
ଏତେ ଏତେ ବେଳେ ସକଳ ସମ୍ପଦେ
ବିଦେଶ ବିହାର ଭୂମେ,
କମେଷେ ଏ ଦୁଃଖୀ ସ୍ମୃତି ଗୋଟି, ବାବୁ,
ଆଣିବ କାହିଁକି ମନେ ।

ଯାହା ଲାଗି ଯାହା    ଖଞ୍ଜିଛନ୍ତି ବିଧାତା
ହୃଦସ୍ଥ ଦହନ ଶିଖା,
ବିଶ୍ୱ ବଇଭବେ    ତା ଗୁପ୍ତ ସଂଯୋଗ
ଆସଇ କେବେ କି କଣ ?

କେବେ ସେ ଆସିବ    ଏ ମହା ସୃଜନେ
ଏକାଠି ବସିଛନ୍ତି ଦୁହିଁ;
ମାଆ ଭିଖାରିକା,    କରୁଣା ବନ୍ଧୁ ଗୋ,
ଆଣ ଶୁଭେ ବାହୁଡ଼ାଇ ।
ଛୁରଥନା କୁଞ୍ଜେ    ଫୁଟିବାର ସେତେ
ଫୁଟନ୍ତ ସୁମନ ପନ୍ତି;
ବେଣୀ କଳିକା ସେ    ଆସିଲା ବେଳକୁ
ଡାଳେ ରହିଥାଉ ଶାନ୍ତ ।
ଏ ସ୍ମୃତି ବିପିନ    ଅଭିପି ସେ ଘଟିବ
ମୋ କରେ ଅନନ୍ତ ଯାଇ,
ତହୁଁ ତଳେ ପୁଣି    ବିଜନ କରି ମୁଁ
ସର୍ମିତ ପାରିବ ନାହିଁ ।
ନଡ଼ାଳ, କୋଇଲି,    ତରୁ ଡାଳେ ବସି
ଅମୃତ ସଙ୍ଗୀତ ଧାର,
ନବନ, ସମୀର,    ନରୁଇ ବିପିନ;
ଲୁଚ; ରହୁ ଚନ୍ଦ୍ର ତାର ।



# ବୈତରଣୀ ତୀରେ *

"କାହିଁ, ଲୋ ମାଉସି, ଏକା ଯାଉଥିଲୁ ଦୂରେ
କୁଟୀର ଦୁଆର ଡେଜ ? ଫେରୁଛୁ ଆତୁରେ ।
ପାଦେ ନାହିଁ ବଳ, ପଥ ଯିବା ପାଇଁ ଭୂଲି,
ମୁଣ୍ଡ ଭାର କାନ୍ଥ ପର ନପାରେ ସମ୍ଭାଳି ।
ଏ ଥରର କାଳେ ଗୁଣ୍ଡ କେ ଦେଲା ଗୋ ଭରୁ ?
କସିଯାଅ ଦଣ୍ଡେ, ଗୁପ୍ତା ଡାକୁଛି ଭରୁ ।"

ଶୁଣି, ମୁଣ୍ଡ ଉଠାଇଲା ଟେକେଇଣି ବୁଢୀ,
ନଇଁ ଧୀରେ, ଥୋଇ ତଳେ, କାଢ଼ିଲା ଗୁଙ୍ଗୁଡ଼ ।

---

* ଜୟନ୍ତୀ ଗଡ଼ ସିଂହଭୂମ ଜିଲ୍ଲାରେ, ବୈତରଣୀ ନଦୀ କୂଳରେ । ନଦୀର ଆରପାଖରେ କେନ୍ଦୁଝର ଜିଲ୍ଲାର ଚମ୍ପୁଆ । ଏ ପଦ୍ୟର ଘଟନା ସମୟରେ କବି ଜଣେ ସହକର୍ମୀଙ୍କ ସହିତ ୧୯୨୧ ମସିହାରେ ଚକ୍ରଧର ପୁରରୁ ଜୟନ୍ତୀଗଡ଼କୁ ଅସହଯୋଗ ପ୍ରଚାର କାର୍ଯ୍ୟରେ ଯାଇଥିଲେ । ଚକ୍ରଧର ପୁରରୁ ଜୟନ୍ତୀଗଡ଼ ସତେଇଶ କୋଶ, ଯୋଜନକୁ ଚାରିକୋଶ ହିସାବରେ ପ୍ରାୟ ସାତ ଯୋଜନ । 'ସାତ' ସ୍ଥାନରେ କବି 'ଆଠ' ଲେଖିଛନ୍ତି । କବିଙ୍କ ପିତାମାତା ମରିଗଲା ପରେ, ତାଙ୍କ ଜେଜେମା ଚାରିବର୍ଷ ମନଦୁଃଖ ଓ ଅର୍ଥାଭାବରେ ବଞ୍ଚିଥିଲେ । କବି ସେ ସମୟରେ ପୁରୀ ଓ କଟକରେ ପଢ଼ୁଥିଲେ । ସେ ମାସିକ ଦଶଟଙ୍କା ଛାତ୍ରବୃତ୍ତିରୁ ନିଜ ପଢ଼ିବା ଖର୍ଚ୍ଚ ଚଳାଇ, ଜେଜେମା, ଭଉଣୀ ଓ ପତ୍ନୀଙ୍କ ଖର୍ଚ୍ଚ ନିମନ୍ତେ ମାସକୁ ମାସ ତିନିଟଙ୍କା ପଠାଉଥିଲେ ।

ଚଗଲକନା ରଣ୍ଡୁ ଫେଇ, ବାଢ଼ିଲା ସମ୍ଭାର—
ଗୁଞ୍ଜଲ ଦ ମୁଠେ କେତେ ଯତ୍ନେ ବନ୍ଧା ଚାର ।
କହିଲା, "ମାଗି,ରେ ବାବୁ, ସାତ ଦିବସଟି
ଗାଉଁ ଗାଏଁ, ଆଣିଛି ମୁଁ ଏ ଗୁଞ୍ଜଲ ମୁଠେ ।
ଜଏ ଦେଲେ, ଜଏ ପୁଣି କଲେ ଅପମାନ,
ପାଦେ ଚାଲି ଥକଚାର ସାର ହେଲା ଜାଣ ।
ଯମପୁରେ ନ କରନ୍ତୁ ପେଟ ଝଳା ଲେଶେ,
ପ୍ରାଣପତି ପାଶେ ଶୋଇ ମଶାଣି ପାଉଁଶେ ।
ଗୁଣ୍ଡ ଯେ ଅଛନ୍ତି ଯାଇ କୁଳର ଦୁଲଣା,
ସଉତୁଣୀ ପେଟ୍ର ମୋର ପୁଅ ନଉତୁଣା ।
ଖାଇଥିଲେ ବାପା ମାଆ କେତେ ଧର ସୁଖେ,
ପେଟ୍ରୁ କାଟି ଘାଚ ଗୁଣ୍ଡା ଦେଉଥାନ୍ତେ ମୁଖେ ।
ବାଳୁତୁ ଉପାଦ ଅଛି, ନ ପାରଇ ଟଟି,
ସେ ଲାଗି ମାଗି ମୁଁ ବୁଲେ, ନାହିଁ ଅନ୍ୟ ଗତି ।
ରନ୍ଧବାଢ଼ି ଦେଲେ, ଭୁଞ୍ଜି ବସିବ ସେ ଠାଏ,
କହଲେ, ଏ ପୋଡ଼ା ପେଟେ ଭରିବ ଗୁଣ୍ଡାଏ ।
କେତେ କ୍ଷଣମାନେ ଅଛି ମୋ ଦୁଃଖପସରା,
ଭେଣ୍ଡା ହେଲା, ପିଲାପଣ ନ ଛାଡ଼ିଲା ପରା ।
କାଲି ଦେଇଅଛି ମାଡ଼, ଫୁଲିଛି ପିଠି;
ପୀଡ଼ା ଯୋଗେ ଦେହ ମୋର ହୁଏ କଟି କଟି ।
ମାଗିନାହିଁ ଆସିଥିଲେ କ ଭୁଞ୍ଜନ୍ତା ଧନ ?
କ ଦରବ ନେଇଛୁ ବା, ମାଗି ସାଙ୍ଗ ଧନ ?
ଦୁଧ ଭାତ ଖାଆନ୍ତା ସେ ଥିଲେ ଘର ପୁଏ
ମୋ ଧନମାଳରେ ପେଜ ନ ମିଳେ ଟୋପିଏ ।"

କହି ବୁଢ଼ୀ ଗଡ଼ାଇଲା ନେତ୍ରୁ ବାଷ୍ପଧାର,
ହାତ ବାଡ଼ି ଭର ଦେଇ, ନଇଁ ହେଲା ଛିଡ଼ା ।
ନେଡ଼ା ତା ନୋହିଲା ଆଜ କହିବାର ଲବେ,
ମଜ୍ଜନ୍ତୁ ବଳ କ ଶିଳେ କଣ୍ଠୁଭାଷ ଭବେ ?
କାଢ଼ି ବଟୁ କୋହ୍ନି ଚରେ ଦୁଇଟି ପଇସା,
ଦେଲେ ଯାଚେ ସଙ୍କୋଚେ ତ, ଦୟା ତହିଁ ମିଶ
ଝଟେ ଟଲା ନେତ୍ରଯୁଗ୍ମୁଁ ଲୁହ ବେନି ଝର,
ବଦନେ ହରଷ ଶୋଭା ହେଲା ଢଳ ଢଳ ।

ଆଠଦିନ ସେ ଦିନୁ ମୋ ଗଲାଣିଟି ଛତ,
ଏ ଆଠ ଯୋଜନ ରାଜ୍ୟ ବୁଲି ମୁଁ ଆସିଛି ।
ଚେତେ ନଗ ଭ୍ରମେ ଚତ୍ର ସାପ୍ତାହ୍ନ ବଜାରେ,
ଜୟନ୍ତୀ ଗଡ଼େ ସେ ଦୂର ବୈତରଣୀ ଘାଟରେ ।
ନନ୍ଦ ବୈତରଣୀ ହେଉ ଏକାକ୍ଷ ବୁଡିଟି,
ଭିକ ମାଗି ବାସେ ଆସୁଥିବ ତା ନେଇଛି ।

ଭିକ ପିଡା ମାଗି ନାହ୍ନିଁ ଆଉଁ ଗାଏଁ ବୁଲି,
କେତେ ସ୍ଥାନମାନେ ଯାହା ନଥିଲା ସେ ପଡ଼ି !
ପୁଷ୍ପ ବୋହୁ, ଜଗ ହୃଦ ଅମୂଲ୍ୟ ପସର,
ଡକା ଡକ ହୋଇ ଗୁଲି ଯାଇଥିଲେ ପର ।
କବୀର କୋଣକୁ ତାର କେଥିଲା ମୋ ଧନେ ?
କେତେ ନଯାତନା ମୁହିଁ ଦେଇଅଛି ଜୀବନେ !
କାନେ ନାହିଁ ଶୁଣି ଇଛି 'ବୁଢ଼ୀମାଆ' ଡାକ,
ନାଥ ହୋଇ ଧନେ ତାର ମାଡ଼ନାହିଁ ପାଖ ।

ତା ଶୂନ୍ୟ କୋଳଟି ଝିଅ ନାହିଁ ମୁଁ ପୂରଣ,
କିଶୋର ବୟସ ଯାଏ ପ୍ରବାସେ କଟାଇ ।
ସେ ଯୋଗେ ପାଇଲି ଆଜି ଯେ ବୃଦ୍ଧ ଜୀବନେ,
କାହାର କି ଉପକାରେ ଲଗାଇବି ଝିଅ ?
ଗଢ଼ିଛି ମୁଁ ଏ ପ୍ରାଣଟା ତା ସ୍ନେହ ସମ୍ଭାରେ,
ସ୍ୱଜନ ସେନେହେ ମଞ୍ଜେ ଶ୍ଳୋକା କରି ତାରେ ।
ଏଣୁ ଅନଶନେ ଆହା ବୁଜିଛୁ ସେ ଆଖି,
ନିଜ ପ୍ରତିରୂପ ପଟେ ଯାଇଅଛୁ ରଖି ।
ଯାଉଅଛୁ ନେଇ ଏବେ ଗୁରୁ ମୋର ବନ୍ଧୁ,
ସେ ତ ଭବ ସନ୍ତରଣେ ମୋର ମହାସିନ୍ଧୁ ।
ତୋ ବିନେ ଏ ସୌଭାଗ୍ୟ ମୋ ମିଳନ୍ତା କି ଲଭେ ?
ବଞ୍ଚିଥା, ଜୟନ୍ତୀ ବୁଢ଼ି, ବଞ୍ଚିଥାଅ ଭବେ ।



# ଅଦେହ୍ନ ଅମୃତ କେଳି

କେତେ କେତେ ଦିନ ଯାଇଛି, ରେ ପିକ,
ଗତ ଏ ଜୀବନେ ମୋର,
ନିମିଷକ ଲାଗି ଲୋଡ଼ି ନାହିଁ ଏ ଯେ
ସୁଧାବାଣୀ ତୋ କଣ୍ଠର ।

ଶ୍ରାବଣ ଅସର ଟପଂ ଟପ ଟପ
ଢାଳଦିଏ କାହୁଁ ଆଣି,
ନଈ ନାଳ ପୂର ବହି ଯାଉଥାଏ
ବରଷାର ବଢ଼ି ପାଣି ।

କୁଆଁର ପୁନଅ ଜହ୍ନ ଆଲୁଅରେ
ମନ ସନମାନେ ହସି,
କୁମାର କୁମାରୀ ପୁଆ ଖେଳେ ମାତି,
କଥା ହେଉଥାନ୍ତି ବସି ।

ଫୁଲମାନେ ରଚ ପାଟଳ ବସନେ
କନକ କେଦାରୁ ଶିଷ,
ହସ ହସ ମୁଖେ କାଟି, ଚଷାପୁଅ
ରଖଇ ଯତନ କରି ।

ଶୀତ ସାମ୍ରାଜ୍ୟର ଟୁଲି ତନ୍ତୁପାଶେ
କୁଟୀର କୁସୁମ ଗନ୍ଧ—
ବୁଢ଼ୀ ମାଆ ଭୁଲେ ଖେଳନ୍ତି ପିଲାଏ,
ନାନା କଉତୁକେ ମାତି ।
ଯେତେ ଯେତେ ସୁଖ ଏଭଳି ଭୂତଳେ
ସରଗ ସମ୍ପଦ ଜିଣି,
ଡକେ ଛନ୍ଦି, ପିକ, ଲେଉଡ଼ ମୁଁ ନାଞ୍ଚିରେ
ଶୋଭ ଏ ମୋହନ ବାଣୀ ।

ଆଜ ଏବେ ବହେ ମୃଦୁଳ ମଳୟ
କି ଦୂର ବିଦେଶୁ ଆସି,
ଅବନୀ ଆକାଶେ ପୀୟୂଷ କମ୍ପନେ
ନବ ମଧୁ ପରକାଶି ।
ଡାଳୁ ଡାଳେ ଆଜ ବନ ଉପବନେ
ଶ୍ୟାମଳ ମୋହନ ବେଳ;
ନବୀନ ମାଧୁରୀ ଏ ଯେତେ ତରୁଣ
କିଶଳୟେ ଉଠେ ଖେଳ ।
ସୁମନେ ସୁମନେ ହୃଦ ଉନମଦେ
ଉଛୁଳେ ସୋହାଗ ସୁଧା,
ଏକଇ ଏ ଖେଳ ପ୍ରଭୁ ଝେଲେ ଆଜ
ସରଗେ ମିଶେ ବସୁଧା ।

ଏ ସକଳ ମେଳେ ନ ଖେଳିବ ଯେବେ
ତୋ କୁହୁ ଚପଳା ଶିଶୁ;
ସରଗ ମରତ ପୀୟୂଷ ସଙ୍ଗୀତେ
କି ତାନ ପିବରେ ଛୁଞ୍ଚି !
ଜେତେ କେତେ ଦିନ ଯାଇଛି,ରେ ପିକ
ବୃଥା ଏ ଜୀବନ ମୋର,
ନିମିଷକ ଲଗି ଲୋଡ଼ି ନାହିଁ ଏ ଯେ
ସୁଧାବାଣୀ ତୋ କଣ୍ଠର ।
ଢାଳ ଆଜ ଢାଳ, କାନନ ଅନ୍ତରୁ,
ଅଦେହ ଅମୃତ କେଳି;
ଶୂନ୍ୟରୁ ଉଚ୍ଛୁଳି ଶୂନ୍ୟ ଅନ୍ତରୀକ୍ଷେ
ଯାଉ ଏ ଚଞ୍ଚଳ ଖେଳ । •



# କାକଳି

ଗଛରୁ ଗଛକୁ ଉଡ଼ି ଏକାକୀ କୋଇଲି,
ବନ ଦେଶେ ଅବିରଳ ଢାଳଇ କାକଳି ।
ଉଚ୍ଛୁଳି ଉଠୁଛି ବନ ନିକୁଞ୍ଜ ସକଳ,
ମୃଦୁ କମ୍ପେ ଦୋଳୁଅଛି ପତ୍ର ଫୁଲ ଫଳ ।
ନିକୁଞ୍ଜ ନିବାସୀ ମୋର କନକ ପ୍ରତିମା,
ଦେଖନ୍ତି ଯେ ଶିଶୁଗଣ ଗୀତ ମଧୁରିମା ।

ଏସନ ସମୟେ ଦୁରନ୍ତରବ ଅପଚନେ,
କୁଆ ଦଳେ ଆସି ଖରେ ମିଳିଲେ କାନନେ ।
ଚଉପାଶେ ଘେରୁଛନ୍ତି କୁଆ କୋଟି କୋଟି,
ତା ମଧ୍ୟେ କବଳି ଧୀରେ ବସି କୋଇଲିଟି ।
କୁଆ ରବେ ଅବଦେଲେ ଯାଏ କାନ୍ଦି ଉଠି,
ଏକାକୀ ପାଦପ ଡାଳେ କୋକିଳ କାକଳି ।
ଏକ ମହା ଗୀତ ଛାଦ ଉଠଇ କାନନେ,
କୁଞ୍ଜୁ କୁଞ୍ଜେ ଥରିଯାଏ, ସୁମନ୍ଦ ସ୍ୱପନେ ।
ଧୀରେ ପଥେ ଖେଳି ଆସେ ମଳୟ ଲହରୀ,
ମଧୁର ପରଶେ ବନ ପୀୟୂଷ ବିତରି ।

ଗୁଣୁ ଗୁଣୁ ଗୁଣୁ ରବେ ଫୁଲୁ ଫୁଲେ ବସି,
ଫୁଲ ମଧୁପାୟୀ ଅଳି ଝଙ୍କରଇ ଆସି ।
ନମକ୍ଷନେ ଶିଶୁଗଣ ଶୁଣି କେତେ କ୍ଷଣ,
କୋଳାହଳେ କରତାଳ ଏଅନ୍ତ ବଦନ ।
ସଢ ନଭେ କୁଆ ଉଡ଼ ଯାଆନ୍ତ ସକଳେ;
ତଥି ମଧ୍ୟେ ଉଡ଼େ ପିକ ବାରି ନୋହୁ ତଳେ ।
ଦୂରୁ ଦୂରେ ବନ ଦେଶେ ଉଠଇ ଉଚ୍ଛୁଳ—
କୁଆ କୋଇଲଙ୍କ ମିଶା ମୋହନ କାକଳ ।



# ଭଗ୍ନୀ *

ସେ ଯୁଗର କଥା ଆଜ ଅଛଇ କି ମନେ,
ଯେବେ ମୋ ଗହଣେ ବସି,
କର୍ମେର ଅଧରେ ହସି,
କେତେ ଗାଉଥିଲୁ ତର ଦରସ୍ଫୁଟ ବଚନେ ?
ମୁହଁ ନ କହୁଣୁ କିଛି;
ବାଦ୍ୟତ ସମ୍ପଦେ ନାଚି,
ତୋ ଗୀତ ପ୍ରଶଂସା ଆପେ କରୁଥିଲୁ ହେଳେ;
ସେ ସବୁ କି ମନେ ଆଜ ପଡ଼େ ବେଳେ ବେଳେ ?

ଘର କୋଣୁ ମୋତେ ଡାକଥିଲୁ ଦୁଇଦନ ।
ଥିଲୁ ଯେବେ ଏ ବସ୍ତୁର,
କପାଁ କଲୁ ଆପଣାର;
ଅତୃପ୍ତ ବାସନା କପାଁ ରଖିଗଲୁ ପ୍ରାଣେ;
କପାଁ ଦେଲୁ ଏତେ ଦୁଃଖ ଏତେ ସନମାନେ ?

---

* କବିଙ୍କ ପିତାମାତାଙ୍କ ମୃତ୍ୟୁପରେ, ଭଉଣୀଟି ପ୍ରାୟ ଦୁଇବର୍ଷ ଜେଜେ-ମାଙ୍କ ପାଖେ ରହି ମରିଗଲା । ସେତେବେଳେ ତାର ବୟସ ଦଶବର୍ଷ । ଉପଯୁକ୍ତ ଚିକିତ୍ସାର ଅଭାବରୁ ତାର ମୃତ୍ୟୁ ଘଟିଲା । ସେହି ବାଲ୍ୟ ବୟସରେ ଓ ଦୈନ୍ୟ ମଧ୍ୟରେ ସୁଦ୍ଧା, ସେ ରୂପ ଗୁଣରେ ଲୋକଙ୍କୁ ମୁଗ୍ଧ କରି ପାରୁଥିଲା ।

ପଷାଣ ପ୍ରତିମା କରି ବସିଥିଲି ତୋରେ ।
ଭାବିଥିଲି, ତୋତେ କରି ଆଦରଣ,
ମୋ ଶୁଷ୍କ ଅନ୍ତର କରିବି ସରସ;
ଶିଖାଇ ଦିଅ ମୋ ତୋ ଶିଶୁ ହୃଦୟରେ
ଜଡ଼ିବ ବାକଣି ଏ ମର ସଂସାରେ ।
ସବୁ କଳ୍ପନା ମିଛ କରିଦେଇ ଅବହେଳେ,
କାହିଁ ଚାଲିଗଲୁ ଏକା,
ପଞ୍ଚଦଳ କୋଳୁ ନବ କୁସୁମ କଳିକା !

ଏତେ ମୂଲ୍ୟ ଯେବେ ତୋର ଥିଲା ଆମଦେଶେ,
କହିଁ ପକାଇଲୁ ପାଦ ଏ ଦୀନ ଆବାସେ ?
ତୋ ନାମ ନଥିଲା ଯେବେ ଏ ମରତେ ଲେଖା,
କହିଁ ଆସି ନିମିଷେ ତୁ ଦେଇଗଲୁ ଦେଖା ?

ତୁଚ୍ଛ ଚାଲିଗଲୁ ତୋ ଇଚ୍ଛେ;
ମୁହିଁ ତେବେ କହିଁ ତୋତେ ନପାରଇ ଛାଡ଼ି,
ଏକା ନଷି ତୋ ଉଚ୍ଛେଦେ ମିଛେ ଦୁଏ ଧାର ?
କ ଯେତ୍ନେ ହଜିଛି ମୋର; ପାଇବାକୁ ଆଶା;
କ୍ଷଣେ ନାହିଁ ଲଭେ ପ୍ରାଣୁ ଅତୃପ୍ତ ପିପାସା ।
ଅନ୍ତର ତ ହୋଇଗଲୁ ନଜେ,
ସେ ସ୍ନେହ ଡୋରଟି କହିଁ ନ ଦେଇ ଛିଣ୍ଡାଇ,
ଅନନ୍ତେ ଆଦୃତ ତାଙ୍କ ହସ୍ତରୁ ଅନାଇଁ ?
ଏ ବିଶ୍ୱ ଜଗତେ ସ୍ଥାନ ନାହିଁଛି ମୋ ଆଜ ।
ମୋ ସଂପଦ ତୋହରି ସରବ,
ଛିଷିରୁ ମୁଁ ତୋଠାରୁ ଲୋ ପ୍ରୀତି କ ଦରବ;

ସେ ପ୍ରୀତିର ଭୁଲ କନ୍ତୁ ପାଏ ନାହିଁ ଖୋଜି ।
ତୋ ସବୁ ତ ଦେଖେ ମୁହିଁ କେତେ ପ୍ରିୟ ଜନେ,
ସେହୁ ଯାହା ନ ଦେଖନ୍ତି ମୋତେ ମୋ ସମାନେ;
କେତେ ଦୟାବନ୍ତ ପ୍ରୀତି ଢାଳନ୍ତି ମୋ କରେ,
ମନ ଅନୁରୂପେ କେହି ନ ଦଅନ୍ତି ଥରେ
ଏତେ ଅତୃପ୍ତ ପରାଣେ,
ପଡ଼ିଥିବ କପାଁ ଏ ମୋ ବାସନା ଶ୍ମଶାନେ ?

ଚରଦନ ରହିବାକୁ ଆସିଚ ମୁଁ ନାହିଁ,
ଧନ ମାନ ଦେବା ସବୁ ଦୂରକୁ ପକାଇ ।
ଶେନପାଅ ମୋତେ ଭବ ସେ ସଇଜେ,
ଯହିଁ ଯାଇଅଛୁ ନଜେ ।
ତୋ ସବୁ ପ୍ରତିମା ଯେବେ ଯାଇଛୁ ପଳାଇ,
ମୁଁ ଏତେ ବଞ୍ଚେଦେ କପାଁ ରହିବ ଦଇନେ ?
କପାଁ ନ ପାଲଟେ ମରୁ ଏ ବଶ୍ୱ ତୋ ବିନେ ?

ଶେନ ଯାଅ, ମାଆ ମୋର, ମୋତେ ତୋର ପାଶ;
ଏ ଭବ ଲୋଚନ ହାସ୍ୟ ଦୁଃଖ ଦୀର୍ଘଶ୍ୱାସ,
ଯେତେ ବା ବଚନ, ଯେତେ ମାରବତା
କାହିଁ ତ ନବୁଝେ ମୋର ତପ୍ତ ଜୀବନଟା ।
ଶୁଣାଅ ସେ ବାଣୀ ବାରେ,
ସେ ସେନେହ ଧାର ଢାଳିଦଅ ଢାଳେ;
ଏ ଶୁଷ୍କ ପରାଣ ମୋର ଶୋହିବ ସୁମନେ,
ଭଗ୍ନୀ ଭୁ, ଘଇ ମୁଁ ହେବା ଅନନ୍ତ ମିଳନେ ।



# ପିଅରୁ ଅଧିକ *

ଅସରା ଅସରା ପାଣି ବରଷେ ଅଧୀରେ,
ନଈ ନାଳ ବାଟ ଘାଟ ବାରି ନୁହେ ତିଳେ ।
ଘଡ଼ଘଡ଼ି ଚଡ଼ଚଡ଼ି ପଡ଼େ ଏକୁ ଆନ,
ବିଜୁଳି ଝଟକେ ଭୟେ କମ୍ପଇ ପରାଣ ।
କୋଣକ ଆଶ୍ରମେ କାହିଁ ଢଳ ପଦା ବନେ,
ଜନ ପ୍ରାଣୀ ଜଣେ ନାହିଁ ଦିଶଇ ନୟନେ ।
ପିନ୍ଧାବାସ ତିନ୍ତ ଯାରେ, ଥରେ ତନୁ ଶୀତେ,
କଳ କଳ ବାଆ ପାଣି ପିଟୁଛି ନିରତେ ।
"କୋଲ ମାରଯାଏ ଦେହ, ନଚଳେ ପୟର,
ଆଉ ନାହିଁ ଚାଲି ବାଟେ ପାରିବ ନଜର ।"

---

* ଏ ପଦ୍ୟ ରଙ୍ଗଧରପୁର ନିକଟର ଏକ କୋହ୍ଲ କୁଟୀର ପାଖ ଘଟଣା ଉପଲକ୍ଷେ ଲିଖିତ । କୋହ୍ଲମାନେ ଅନାର୍ଯ୍ୟ ଜାତି। ତାଙ୍କୁ କେହି କେହି 'ଚୂହାଡ଼' କହିଥାନ୍ତି । ଚୁହାଡ଼ ଗୋଟାଏ ଅବଜ୍ଞାସୂଚକ ନାମ । ସେ ଘଟଣାରେ କବିଙ୍କ ସଙ୍ଗେ ତାଙ୍କର ଜଣେ ଯୁବକ ସହକର୍ମୀ ଯାଇଥିଲେ । ସେ ଅନେକ କାଳ କବିଙ୍କ ଘରେ ଘରର ପୁଅପରି ରହିଥିଲେ ଓ ସକଳ ପ୍ରକାର ପୁତ୍ରସୁଲଭ ସ୍ନେହ, ଆଦର ପାଉଥିଲେ । ସେ ପ୍ରତିଦାନ ମଧ୍ୟ କରୁଥିଲେ ।

ଶୁଣି ଏ କାତର ବାଣୀ, କୁଟୀରୁ ବାହାରି,
ବାଆ ପାଣି ସୁଏ କଏ ଯାଉଛୁ ଏ ଥରି ।
ଓଦା ହୋଇଅଛୁ ଦେହେ ଶୁଖିଲା ବସନ,
ଛେବେ ଦନ୍ତେ ପାଦ ମ୍ଳାନ ଆସୁଛି ବଦନ ।
କହିଲି, "ଏ ଅଶ୍ୱନକେ ଘୁଞ୍ଚ ସରଦାର,.
ବେହରଣେ କେବେ, ବାବୁ, ନୁହେ ଆସିବାର ।
ଦନ୍ତୁ ଦେହେଁ ସୁକୁମାର, ବାପା ମାଆ ଭାଇ
ଜାଇ କି ଏ କାଳେ ଘରୁ ଦାଅନ୍ତେ ପଠାଇ ?
ଆସ, ବାବୁ, ବସ ଦଣ୍ଡେ ମୋ ପର କୁଟୀରେ,
ବାଆ ମାଣି ଗୁଡ଼ଗଲେ ଫେରିଯିବ ଘରେ ।
ଘାଣ୍ଟି ହେଉଥିବେ ହିନା ଘରର ସରଣୀ,
ଅଧିକେ କାନ୍ଦିବେ ବାଟେ ତମ୍ଭବାର ଜାଣି ।
ଅନ୍ଧାର ନୋହୁଣୁ ଗଞ୍ଜ, ମିଳିଲେ ବାହୁଡ଼,
ହସି ସେ ଉଆସ ରାଣୀ ନେବେ ସୁଖେ ଲେଉ ।
ଅଞ୍ଚଳେ କପାଳୁ ପାଦ ପୋଛିବେ ଯତନେ,
ବାଢ଼ିବେ ଯା ଥିବେ ରାନ୍ଧି ସାସ୍ୱାଦ୍ଧ ଭୋଜନେ ।"

ଶ୍ରବଣେ ଆଦର ବାଣୀ, ପାଦ ହେଲା ଥିର,
ଦେଖିଲି, ସାଥିଟି ଶୀତେ ଥୁରୁ ଥୁରୁ ମୋର ।
ସତେ କୋଳ ମାଗେ ଦେହ, ନ ପାରଇ ଚାଲି,
ଅଳପ କ୍ଳେଶେ କି ବାବୁ କରିଥାନ୍ତା ଅଳି !
ସ୍ନେହକେ ମୁଁ କହିଲି, "ବସ, କଥା ଭାର ସେନ,
ଦେଖ, ରହିଛି ତ ନେଉ କୁଠୀର ବାସିନୀ ।"

କହିଲା, "ଚୂହାଡ଼ କୂଳେ ହେଲେ ତା ଜନମ,
ଏତେ ହେନ୍ଦୁ କହି କହି ଗଡ଼ୁଛି ଜୀବନ ।
ଏ ପାଣି ପବନେ କଥା ଏଡ଼ିଦେଇ ତ ର,
ହେଉଣ୍ଟି ଭୁଲିଗଲେ ବେଳ, ନ ଭଣିବ ଭଲ ।
ରହ ଦଣ୍ଡେ ବସି ତାର କୁଟୀରେ ଆପଣ,
ଯିବ, ଘରେ ଛୁଡ଼ିଗଲେ ଏ ପାଣି ପବନ ।
ଜନ୍ମର ହେଲେଟି ଯେବେ ହୋଇଯିବ ଗତ,
ଅଲୁଅ ଅଣି ମୁଁ ବାଟେ ଆସିବ ସାଙ୍ଗୋଟି ।
ଘରେ ଏକା ସେପି ବୋଉ ବାଟ ଥିବେ ଚାହିଁ,
ନୟନ ସେନେହ ଧାର ଗାଲରେ ଗଡ଼ାଇ ।
ଘଡ଼ଘଡ଼ ନାଦେ ପଡ଼ୁଥିବେ ଟି ଚମକି,
ବିଜୁଳି ଝଟକେ ବୁଜି ଦେଉଥିବେ ଆଖି ।
ପରାଣ ସଙ୍ଗାଳି ପୁଅ ପଡି ବେନି ଜନେ,
ଏ ଘୋର ବଛାସେ ଛେଷି ଦେଇଛନ୍ତି ବନେ ।
ପଲକେ କେସନେ ସୁଖେ ପାରିବେ କଟାଇ ?
ମିଳିବ ଆବାସେ ଏବେ ଭୁରିତେ ମୁଁ ଯାଇ ।
ଦେଖି ମୋରେ ପିଣ୍ଡେ ଅଧେ ପଶିବ ଜୀବନ;
କହିବ, କୁଟୀରେ ଏଥି ବସିଛ ଆପଣ ।
ନୋହିଲେ, ଜୀବନ୍ତେ ବଳ ମରଣୁ ଅଧିକେ,
ଭାଳୁଥିବେ ବୋଉ ପରା ଚାହିଁ ବାଟ ଦୁଃଖେ ।"

କହି ଏତେ, ଚୂଳ ପାଶୁ ଗଲା ତରତରେ,
ବାଆ ପାଣି ଅନ୍ଧକାରେ ଲୁଚିଗଲା ଗରେ ।
ଶୀତେ ଥୁରୁ ଥୁରୁ ବାଟେ ନୋହୁଥିବ କେତେ,
କେତେ ପାଣି ମୁଣ୍ଡେ ମେଘ ଢାଳୁଥିବ ସତେ ।

କପରଟି ସନ୍ତୁଷ୍ଟିବ ସେ ପ୍ରାଣ ସଙ୍ଗୀନ,
ଏତେ ସ୍ଥାନମାନେ ବାଟେ ଏକୁଟିଆ ଚାଲି ?
ଅନ୍ଧାରେ ମାଡ଼ଇ ଡର, ଚମକେ ପବନେ;
ଚାଲନ୍ତେ, ପଥରେ ଝୁଣ୍ଟେ ପଡ଼ଇ ଅସ୍ଥନେ ।
ବୟସେ ବାଳୁତ; ନାହିଁ ଜାଣେ ସେ କଷ୍ଟରେ,
ଦେହ ଧରି ସହେ ଦେହୀ କି ଦୁଃଖ ଜଗତେ ।
ପୁଅ ନୋହୁ ପିଅରୁ ସେ କରନ୍ତୁ ଅଧିକ,
କି ଦ୍ରବ୍ୟେ ଗଢ଼ିଛୁ ନଜ ମନ ହୃଦ ଟିକ ?
ଛାଡ଼ି କୁଟୀର ରାଜ ଉଆସ ସମ୍ଭାରେ,
ରଖି ମୋରେ, ଚାଲିଗଲ ! ବିଚ୍ଛେଦ ବିହରେ ।
କେତେବେଳେ ଯାଇ ପୁଣି ମିଳବ ଆବାସେ,
ନେଇ ମାର ପୋଟ୍ଟି ବୋଉ ଲୋଡ଼ିନେବେ ହାସେ ।
ଶୁଣିବେ ମଜନେ ପଣ୍ଡି କୁଶଳ ବାରତା,
ସଙ୍କୋଚ ପୁଲକ ଭରେ ପୋତି ଥିରେ ମଥା ।

ଗରଭ ଯାତନା ହେନେ ନ ଭୋଗି, ପ୍ରେୟସି,
କି ପୁଅ ନିଧି ଏ ମଞ୍ଚେ ପାଇନାହିଁ ହସି ?
ନ ହୁଅ ଅଥୟ, ନାହିଁ ଢାଳ ଅଶ୍ରୁ ବାହ;
ମୁଁ ଏଥି ନିଷ୍ଟୁରେ ଅଛି, ନ ହୁଅ ଗୋ ଭଳ ।
କୋହ୍ଲୁଣୀ ବୁଢ଼ୀର ଏ ଯେ ପତର କୁଡ଼ିଆ,
ବାଆ ପାଣି କୋପ ଲଂଘି ହୋଇଅଛି ଟେଆଁ,
ଏ ଘୋର ଆପଦେ ମୁଣ୍ଡ ଗୁଞ୍ଜି ତଳେ ତାର,
ଲଭିଛି ମୁଁ ସତେ ରତ୍ନ ସିଂହାସନ କାର ।
ମନୁଷ୍ୟ ଜନମ ପାଇ ଆପଦେ ଦୁର୍ଦିନେ,
ଧୈର୍ଯ୍ୟ ଯେ ହରାଏ ସେହୁ ଗଣାହୁଏ ହୀନେ ।

ସେଭଳି ଦୁର୍ବଳ ହୀନ ମ୍ଳାନ ଜନ ହାତ,
ଛଦ୍ମ ବେଶରେ ଧରିଥିଲକି ସଙ୍ଗାତ ?
ଚିହ୍ନିଥିବ ତେବେ ମୋର ଗୁଣ ଦୋଷମାନ,
ଯା ଥିଲି ତେବେ ମୁଁ, ଏବେ ରହିଛି ସମାନ ।
କାଳର ପରଶେ ମୁହିଁ ବଦଳି ତ ନାହିଁ,
ମିଛେ ଭଲ ହୁଅ ତେବେ ମୋଲାଗି କମାଇ



# ବାଳକ

"ହସ, ରେ ବାଳକ           ହସରେ ପୁଲକେ,
ଝନାଅ ନୟନ ନମିଷେ,
ସରଗ ସମ୍ପଦ           ଲେଉଡ଼ ଏ ମରତେ
ଆଣରେ ହୃଦୟ ହରଷେ;
ଗଗନ ଚନ୍ଦ୍ରିକା           ମୋହନ ପ୍ରତିମା
ସମ୍ପାଦ ବଦନ ଅମୃତେ,
ଅଧର ଯୁଗଳ           ଲଳିତ ବିଳାସେ
ଢାଳଦଅ ସୁଧା ଭୁବନେ ।"

ମଞ୍ଚନେ ଅନାଇ           ବସିଛୁ ପିଲାଟି,
ପରାଣ ପୁଲକେ ଉଚ୍ଛୁଳ,
ଝସ୍ପରାଣୀ ହାସ           କନକ କଣିକା
ନେବେ ତା ଯାଉଛୁ ବଦର
ମରନ୍ଦ ଧୁଆନେ,           ହୃଦ ପରସରେ
କଣ୍ଠୁ ତା ନସ୍ତ୍ରର ବଚନ,
ନ ଅବା ପୃଚ୍ଛିବ           ସେନେହ ସମ୍ଭାଷେ
ସରମେ ନ ହଲେ ପରାଣ ।

"ଯାଅ ଯାଅ ସୁଖେ ଆପଣା ଉଆସେ
ଭୁଲିବେ, ବାଳକ, ବାହୁଡ଼,
ଶୂନ୍ୟ ସମୀରଣ ଶଶିତାପ୍ର କରେ
ଚରଣ ପରଶେ ବନ୍ଧୁର;
ମୋ ଦୀନ କୁଟୀରେ ନେଇ କ ପାରିବ
ଦୁର୍ଲଭ ଏ ସ୍ୱର୍ଗ ରତନ,
ନମିଷେ କ ଭଳ ରଖିବ ସମ୍ଭାଳ
ଉଇଁଲା ବାଳୁତ ତପନ ?"

ମଞ୍ଚନେ ଅନାଇ ଗୁଲିଗଲା ଖରେ
ତା ମୃଦୁ ପଦ୍ମରେ ପିଲାଟି,
ଅବନ୍ଧ ଗଗନ ଅନନ୍ତ ଅମ୍ବନ
ଏକଇ ବରଣେ ବଭ୍ରାନ୍ତ ।
ଶୂନ୍ୟ ହୋଇ, ମୋର ପୂର ଯେ ଯାଉଛି
ଏ କବା ସମ୍ପଦେ କୁଟୀର,
ଯାଇଛି ବାଳକ, ଯାଉ ଏ ପସପ୍ରେ,
ଫେର ସେ ନ ଆସୁ ଆବର ।



# ଦାନ *

ଦୋକାନରେ ଛନ୍ଦିଅଛି ଚହଟି ସୁବାସେ,
ନାନା ବର୍ଣ୍ଣ ଫଳଭରେ ପୂରି ଦୁଆର ପାଶେ ।
ଲାଗିଅଛି କିଣାବିକା ମହା କୋଳାହଳେ,
ଉଚ୍ଛୁଳେ ଦୋକାନୀ ହିଆ ଆନନ୍ଦ ଲହରେ ।
ଜଣୁ ଜଣେ କିଣି ସାରି ବାହୁଡ଼ନ୍ତି ହସି,
ମୂଲ କରୁଥାନ୍ତି ପୁଣି ଆନ ଜନେ ପଶି ।
ବରଷକେ ଥରେ ଏଜେ ସରଗର ଫଳ,
ଲଭ, ଆଜ କୋଟିନିଧି ନୋହିବ କାହାର ?

ବାଟ ଧୂଳି ଆସନେ ସେ ଖଣ୍ଡିଦୂରେ ବସି,
କିଏ ପୁଚ୍ଛେ ମୃଦୁ ସ୍ୱରେ କେତେ ଭରସି —
ଧୂଳି ମାଟି ବୋଳି ହୋଇ ମଳିନ ବଦନ,
କଳା କନା ଦୁଇଖଣ୍ଡି ଯାବତ ବସନ,
ବାହୁ ଯୁଗଳେ ତା ନାହିଁ ପିଲଟିର ବଳ,

---

* ସତ୍ୟବାଦୀରେ ଦିନେ ଜଣେ ଦରିଦ୍ର ଲୋକ କଞ୍ଚା ଆମ୍ବ କିଣିବାର ଦେଖି ଜଣେ ଛାତ୍ର ଚାରିପଇସାର ପାଚିଲା ଆମ୍ବ ତାକୁ ନେଇ ଦେଲେ । ସେ ତାହା ପାଇ ବିସ୍ମିତ ହୋଇଗଲା । ପଦ୍ୟଟିରେ ସେହି ଘଟନାକୁ ଲକ୍ଷ କରାଯାଇଅଛି । ସେ ଦାନ ଯୋଗେ ପୃଥିବୀ ଯେ କିପରି 'ଦୀନ ସ୍ୱର୍ଗ' ହୋଇଲା ବୋଲି କବିଙ୍କ ମନରେ ଧାରଣା ଜନ୍ମିଲା, ବୁଝିବା କଠିନ । ଦରିଦ୍ରକୁ ଏତେ ଅଳ୍ପରେ ଉକାଶ ସ୍ଥାନକୁ ନେଇଯିବା ବୋଧହୁଏ ତାଙ୍କ ଇପ୍ସିତ ନୁହେଁ ।

ବୟସ ହୋଇବ ଅଳ୍ପେ ତିରିଶ ଉପର;
"କେତେ ଗୋଟି ଅାମ୍ବ ଦେଉଅଛ ପଇସାରେ ?"
"ସୋଡ଼ଏ ପଇସା ତିନି", ଶୁଣିଲା ଉତ୍ତରେ ।
ନିଜ ହାତେ ଥିବା ତାର ଅଧଲଟି ଧରି,
ଦଣ୍ଡେ ସେନ୍ତୁ ମନେ ମନେ କ ହେଲା ବିଚାର ।
ମୁଖେ ତାର ଫୋଟିଗଲା ନୈରାଶ୍ୟ କାଳିମା,
ଟପିଗଲା ଲୁହ କୋହେ ନେତ୍ର ପତା ସୀମା ।

ପାଖ ଗଛ ଛାଇତଳେ ବସି ଏକା ବୁଢ଼ୀ,
ମଝିନେ ପଛରା ତାର ରଖିଅଛି ବାଡ଼ି ।
ସେହିଠାବେ ଏବେ ଯାଇ ନେଉଅଛି କିଣି,
ସେ ଗଛ ଛାଇରେ ତୋଳା ଶ୍ୟାମକାନ୍ତ ଜଣି,
ଅଧଲକୁ ଦୁଇଗୋଟି ସଉଗର ଫଳ,
ମାଗିଲାରୁ ଲଭ ପୁଣି ଗୋଟିଏ ଆଦର ।
ବଦନେ ଅପୂର୍ବ ହସ ଆସଇ ବିରାଜ,
ସଉଗର ଫଳ ସେ ଯେ ନୂଆ ହେବ ଆଜ ।

"କି କଲ, କି କଲ, ବାବୁ; ଛଇତରେ ଯାଇ,
ଏ ପାଚିଲା ଅମୃତକୁ ଦେଲ ଯେ ବଢ଼ାଇ ?

ଜଗତ ଅନନ୍ତକାଳେ ଖୋଳେ ଯେ ପୀୟୂଷ,
ଦେଲ ତ ଛୁଆଇଁ ଛନ୍ନ ଏ ବିଷ ପରଶ ।
ଦ୍ୱିର ପଇସାର ଅମ୍ବ ଦେଲ ଏ ଯେ କିଣି,
ଧାନ ସ୍ଥାନ ବୁଦ୍ଧିଯୁଗ କଲ ଏଁ ମେଦିନୀ ।
ତୃଷ୍ଣାତା ମୁଖେ ଯେ ବ୍ୟେଗନ୍ତି ତିଳଏ ଦେଖା,
ସେ ନୁହେଁ ପୁଲକ, ଅଟେ ବିଷାଦର ରେଖା ।

# ବିହଙ୍ଗ ପରଣ ଘେନା

"ଦେଖୁଛୁ ତ ଦୂରେ  କନକ ନଗରୀ
ମାଣିକ୍ୟ ଭୂଷଣ ଭରା,
'ଆ-ଆ ଆ-ଆ ପିକ'-  ଶୁଣୁଅଛୁ ନିତି
ସୋହାଗ ବଚନ ଧାରା ।
ଭୁଲି କି ତୁ ସତେ  ପିଞ୍ଜରେ କେ ଇଲି,
ଏ ବନଉଦ୍ୟାନ ଛାଡ଼ି ?
ଏ ତନ୍ତୁ ଭାନ୍ତୁ ଚୋ  ନଦେବୁରେ ଆଉ
ଅଲକ୍ଷ୍ୟେ ଅମୃତ ଢାଳି ?
ମଣୁଷ ମରତେ  ଯାବତ ସମ୍ପଦ
ମୋର ଏ ଏକଇ ତରୁ,
ତେଜ ଯା ଗହଳ  ଜୁଡ଼ାଗଲେ ବାରେ,
ଭେଟିବୁ ଶୋଷଣ ମନ୍ତ୍ର ?
ରହିଛି, ଦେଖରେ,  ଫୁଲ-ଫଳ କେତେ
ପଞ୍ଚ କଣ୍ଟକସ୍ଥ ଡାଳେ,
ବହିଛି ଯା ବନେ  ପ୍ରଭୁ ତନ୍ତୁଲତା
ସେନେହ ସୋହାଗ ଧାରେ ।

ରଖିଛି ତୋ ପାଇଁ    ଲତିକା ନିକୁଞ୍ଜ
ସଜାଇ ମୋହନ ବେଶେ,
ନିଶି ଶଶି ଫୁଟ    ପିୟୂଷେ ପଖାଳ,
ଅରୁଣ କନକ ଭାସେ ।
ବହୁଛି ସମୀର    ମୃଦୁ ଆବର୍ତ୍ତନେ
ଖେଳାଇ କାନନ ଭୂମି;
ଦେଶେ ଦେଶେ ମଧୁ    ଯାଉଛି ବିତରି,
କୁସୁମ କେଶର ଫେନ ।
ବସୋର ଯେ ମୋଦେ    ନିଜ ବଇଭବ,
ଅପର ବିହଗ କେତେ,
ଶୁଆ ସାରି ପିକ,    ଆସିବେ ଏଠାବେ
କହୁଁ ବନେ ଛନ୍ଦ ଯେତେ ।
ଦୂର ମନ୍ଦାକିନୀ    ଫେଣିବ ନିକର
ସଲିଳ ଧବଳ ଧାରା;
ହିମାଚଳ ଶିରୁଁ    ହିମ ଶୁଭ୍ର ଚୂଳ
ଓହ୍ଲାଇ ଆସିବ ପରା ।
ମହୋଦଧି ବକ୍ଷେ    ଫେନିଳ ଲହରୀ
ଦେବ ତା ସଙ୍ଗୀତ ପେଷି,
କୁରଙ୍ଗ କେଶରୀ    ସୋଦର ସୋହାଗେ
ସୁଖେ ବିହରିବେ ହସି ।
ଏତହୁଁ ବଳି କି    ଅଛଇ ସମ୍ପଦ
କନକ ରଜତ ବାସେ,
ଯାହା ଲାଗି, ପିକ,    ଭାଙ୍ଗୁଛୁ ହୃଦେ ତୁ,
ବରଜ ଯିବୁ ସେ ଦେଶେ ?

ରହ ଏଥି ରହ,          ବନର କୋଇଲି,
ପୁଲକେ ପରାଣ ନନ୍ଦୁ;
ଏ ସବୁକ ଆଜୁ          ଅବନୀ ଆକାଶେ
ତୋ ଲାଗି ରଖିଛି ବନ୍ଧୁ ?"

"ଯାଇ ନାହିଁ ଯେବେ          ପିବାର ଥିଲା ମୋ
ମୁକତ ମୋହନ ପଥ;
ଏ ତରୁ ଶାଖାଟି          ଲୋଡ଼ି ତ ଆସିଛି
ମୁଁ ଦୂର ଅପରଚିତ ।
ହାତେ ଧରି ଯେବେ          ସୁବର୍ଣ୍ଣ ପିଞ୍ଜରେ
ନୃପତି ତନୟ ମଣି ।
ରଖିଲେ ଆଦରେ,          ଏଡ଼ି ସେ ସୋହାଗ,
ଆସିଛି ଏ ବନଭୂମି ।
ଏ ତରୁଟି ତଳେ          ନଜାଣେ ଆନ ମୁଁ,
ନବସି ନିରତେ ଏଥି,
ମରୁଛ ମରୁ ସେ          ହେଉ ବନ ଦେଶ,
ଝକଟ, ଝକଟ ଅତି ।
ନ ବହୁ ସମୀର,          ଗୁଣୁ ଗୁଣୁ ଅଳି
ଝସୋରୁ ଗୁଞ୍ଜିବା ତାର,
ରବି ଶଶି ତାରା          ଲୁଚନ୍ତୁ ଗଗନେ,
କି ତହିଁ ଅଛଇ ମୋର ?
ଏ ତରୁ ଶାଖାଟି          ମୋ ବିଶ୍ୱ ସାରା ହେ,
ମୋ ଜୀବ ଜୀବନ ନିଧି,

ଯେତେଦିନ ଏଥି    ଗାଉଥିବି ବସି
ଲକ୍ଷ୍ୟ ମୁଁ ପାରିବି ସାଧି ।
ସନ୍ତତ ବରଷା,    ପବନ ପ୍ରବାହ,
ତପନ ତପତ ତେଜ;
ବଣ ଯା ଜୀବନେ    ନେଇଛି ବାରେ କି,
ତା ତନୁଁ ବଳି କି ନିଜ ?
ଡାଳୁଁ ଡାଳେ ଉଡି    ପତ୍ର ଗହଳେ ଟି
କୋଇଲି ଉଷତ ସିନା,
କନକ ଭୂଷଣେ    କବା ଅଛି ତାର
ବିହଗ ପରାଣ ଯେନା ?



# ଜାଗର

କେତେ କାଳ ଅନ୍ଧରକ ବସିଲଣି ରହିଁ,
ନୟନେ ପଲକେ ହେଲେ ନିଦ ଆସେ ନାହିଁ ।
ଜଳ ସରିଲଣି ଏବେ ଦୀପର ତଇଳ,
ଲିଭିଯିବ, ହୋଇଯିବ ସକଳ ଅନ୍ଧାର ।

ଯାରେ ମୁଁ ଅନାଇ ଏଥି ବସିଲି ରାତିଏ,
ସ୍ବପ୍ନ ଛାର ଆସି ବାରେ ନାହିଁ ଦେଖାଦିଏ ।
ଶୋଇଥାନ୍ତି ଯେବେ ଆହା ମନ ବିନୋଦନେ,
ଦେଖିଥାନ୍ତି କେତେ ବ୍ଲୁନ୍ତ ସ୍ବପନ ଶୟନେ ।
ତନ୍ଦ୍ରି ମଧ୍ୟେ ଆସି ପୁଣି ଖେଳଥାନ୍ତା କେତେ,
ଯାରେ ମୁଁ ଲୋଡ଼ଇ ତାର ପ୍ରତିମା ନିରତେ ।
ଶୟନେ କି ସପନେ ତା ନୋହିଲା ନିକର,
ଲିଭିଯିବ ଏହିକ୍ଷଣି ରାତିକ ଜାଗର ।
ଏହିକ୍ଷଣି ଭାଙ୍ଗିଯିବ କାଳ ଅନ୍ଧାରିଆ,
ଉଡ଼ି ନଭେ ଗଲ୍ ଦେଖିବ ଲୁଆ, କୁମ୍ଭାଟୁଆ,
ଦିବସ ଆଲୋକ ଘୋଟି ଆସିବ ଭୁବନେ ।
ଜାଗର ନିଭାଇ ଲୋକେ ଯିବେ ଯେ ଯା ପଥେ;
ମୁହିଁ ଆହା କି କରିବି, ଯିବି ଅବା କାହିଁ,

ମୋ ଜାଗର ବ୍ରତ ଲଭେ ପୂରନ୍ତ ତ ନାହିଁ !
ରାତିକର ଶୋଇବାରେ, ରାତିକ ଜାଗରେ
କି ଲୋଡ଼ା ଜଗତେ ପୁଣି, କି ଫଳ ବା ଫଳେ
ସପନ ପ୍ରତିମା ଆସି କରେ ପରିହାସ,
କ୍ଷଣୁ କ୍ଷଣେ ଫେଇ କେତେ ବିଳସୁ ବିକାଶ;
ରାତିକ ଜାଗର ପୁଣି ନବେ ଈପତନେ,
ଜୀବନର ନବ୍ରରଙ୍ଗ ଅନନ୍ତ ଶପୂନେ ।
କି କରିବି, କାହିଁ ଯିବି ?—ନପାରେ ମୁଁ ଭାଳି;
ଜୀବନୁ ଅଧେ ମୋ ଆହା ମିଛେଇ ଗଲା ଚାଲି !



# ଯାଚ କି ପାରିବି ? *

ଘେନ ଏ ସୁମନ          ମାଳାଟିକ ଗଢେ,
ସେନେହେ ପରାଇ ଶିର;
କହେବ କବ ହେ,          ନ ଜାଣେ କଣ୍ଠରେ
ତବ ଯୋଗ୍ୟ ଉପହାର ।
ଜନମ ଭୂମିର          କୀରତ ସ୍ୱଗୁଣେ
ରଖିଛି ଯତନେ ଟେକ;
ନଜ ବେକ ଉରେ          ମଣ୍ଡିଛ କୁଶଳେ
କନକ ଚଷଣ ଲେଖି ।

---

* କବ କଲକତାରେ ପଢୁଥିବା ସମୟରେ ସେଠାରେ ଓଡ଼ିଆ ଛାତ୍ର-ମାନେ ଦଳେ ବ୍ୟାସକବ ଫକୀରମୋହନଙ୍କୁ ଅଭିନନ୍ଦନ କରିଥିଲେ । ବ୍ୟାସ-କବିଙ୍କ ଘର ବାଲେଶ୍ୱର ସହରରେ, ଏକ ଫୁଲ ବଗିଚା ମଧ୍ୟରେ । ବାଲେ-ଶ୍ୱରର ପାଖକେ ସମୁଦ୍ର ଓ ଅନ୍ୟ ପାଖରେ ଅରଣ୍ୟାନୀମୟ ଅଭେଦ୍ୟ ପର୍ବତମାଳା । ବାଲେଶ୍ୱର ସହର ବଳଙ୍ଗନଦୀ କୂଳରେ । ସାଳିଆ ନଦୀ ଓ ଘଣ୍ଟଶିଳା ପାହାଡ଼ କବିଙ୍କ ଜନ୍ମସ୍ଥାନ ବାଣପୁରରେ । ବ୍ୟାସ କବି ବାଣପୁର ଯାଇ ନଥିଲେ । ତେଣୁ ସାଳିଆ ଓ ଘଣ୍ଟଶିଳା ତାଙ୍କ ମହତ୍ତ୍ୱ ଉପଲବ୍ଧି କରିବାର ସୁଯୋଗ ପାଇ ନଥିଲେ, କିମ୍ବା ବାଣପୁରବାସୀ କବିତା ଚର୍ଚ୍ଚା କରୁ ନଥିବା ଯୋଗେ ତାହା ଘଟି ପାରିଥାଏ ।

'ମାମୁଁ', 'ଉପହାର', 'ଧୂଳି', 'ପୁଷ୍ପମାଳା',
'ଛଅ ମାଣ ଆଠଗୁଣ୍ଠ'—
ଆଜି ଯେତେ ଯେତେ କରିଛି ପାରନ୍ତି
ଏ ମରତେ ବଇକୁଣ୍ଠ;
ତାହାର ରଚକ ଉତ୍କଳ ମଣ୍ଡପେ
ଦୋସର ବାଲ୍ମୀକି ଆଜି,
କଳିଙ୍ଗ ପୁଲିନେ କରୁଛ ବିହାର,
ସରଗ ସମ୍ପଦ ରାଜି ।
ଶଇଳ ସାଗର ଯୁଗଳ ଅଧରେ
ଖେଳେ ଯେ ମୋହନ ଗୀତି,
ଛନ୍ଦେଁ ମଧ୍ୟେ କବି ଦେଇଅଛ ତାଳି
ଆପଣା ହୃଦବ ସ୍ମୃତି ।
ନିଜ କୁଞ୍ଜବନେ ବିହରି ପୁଲକେ,
ତୋଳୁଛ କନକ ଫୁଲ,
ହୃଦ ଉପବନୁ ନବ ଫୁଲ ନେଇ
କରି ଅନୁରାଗେ ତୂଳ ।
ଉତ୍କଳ କମଳା ବିଳାସ ଭଣ୍ଡାରେ
ଥାପିଛ ଯେ ନିଧିମାନ;
ଯୁଗେ ଯୁଗେ, କବି, ସୁମରୁ ଥିବେ ହେ
ତବ ଏ ମହାର୍ଘ ଦାନ,
ମହେନ୍ଦ୍ର ମନ୍ଦର ଝରୁ ମେଘାସନ,
ଋଷିକୁଲ୍ୟା ମହାନଦୀ,
ସୋଲର ସଲିଳ ବେଢଣେ ଚିଲିକା
ମୃଦୁ ମନ୍ଦ୍ର ମହୋଦଧି;

ଗୋଟି ଗୋଟି ଯେତେ        ଚରଣ ସମ୍ପଦ
ସ୍ୱରଗ ସୁଷମା ବଳି,
ସ୍ୱର ହେଉଥିବେ        ଜୀବନ ସ୍ୱପନେ,
କାଳ ପାରାବାରେ ସ୍ଥଳି ।
ଭୁଲନାହିଁ ତବ        ମହତ୍ୱ ସାଲଆ,
କଳନାହିଁ ଘଣ୍ଟିକା,
ତେଣୁ ତୁମ କଥା        ବିସୋରି ପାରନ୍ତୁ
ଅନୁସରି ଉତ୍କଳା
ଏ ମହୀ ଉତ୍କଳ        ଜାଣ୍ଡ ଜୀବନେ ବା
କି କ୍ଷୁଦ୍ର ରେଣୁଟି ମୂର୍ତ୍ତି;
କି ଭଳି, କବି ହେ,        ହୃଦ ଉପହାର
ଚରଣେ ପାରିବ ଥୋଇ ?
ଅମର ଆଶିଷୁଁ        କଣିକା ମାତର
ବରଷି ଦିଅ ମୋ ଶିରେ—
ତୁମ ଭଳି ସୁଖେ        ପାରିବି ବିହରି
ଏ ପ୍ରିୟ ଜନନୀ କୋଳେ ।
ଜନମି କି, କବି,        ଡାକି ମୁଁ ପାରିବି
ସନ୍ତାନ ସେନେହେ ଘ୍ରାଣେ;
ତା ଧୂଳିରେ ଢାଳି        ଦେବି ଏ ଶୋଣିତ
ହୃଦ ପୁଲକିତ ହାସେ;
ଉତ୍କଳ ମାତାର        କୋଟିଏ ସନ୍ତାନ
ଗୋଟିଏ ଚରଣ ଧରି,

ନଦୀ ଗିରି ବନୁ ଅତୁଳ ସମ୍ପଦ
ଆଣିବେ ଆଦର କରି ।
ଏ ଗୋଟି ଚରଣ ପୂଣ୍ୟ ପିତା ଆଜେ,
ନନ୍ଦନେ ରହିଛ ବସି;
ଯାଚ ନ ପାରିବ ? ଯେନ ଏ ମାଳାଟି,
ତୁମରି ସମ୍ପଦେ ରତ ।



# ନିଶ

ପାହାନ୍ତରୁ ଉଠି କୁଆ ରଡ଼ିବାର ଆଗେ,
କୁଆଁଚାଷ ନ ଉଠୁଁଣୁ ଉଷାର ସଗରେ,
ଦେଉଳର ଘଣ୍ଟାଘେଲ ନ ଥାଆନ୍ତା ବାଜି,
ନ ଥାଆନ୍ତା ବାଟୋଇର ଶ୍ରମ ନିଦ୍ରା ଭାଜି,
ବୋହୂମାନେ ଘାଟେ ଆସି ନ ଥାନ୍ତେ ଗାଧୋଇ,
ଫୁଲଲତା ଆମୋଦନ ରହିଥାନ୍ତେ ଶୋଇ,
ବିନ୍ଦୁ ବିନ୍ଦୁ ଅପଚନେ ପଡ଼ିଥାନ୍ତା ଝରି,
ଯାମିନୀ ବିବଶ ମେଳେ ମଧୁ ଅଶ୍ରୁ ବାରି,
ଗଛ ପତ୍ର ପାହାନ୍ତର କାକର ବରଷା,
ଗଛ ପଦେ ନିଧି ସେ ଯେ ସୁଖ ଦୁଃଖ ମିଶା !

ସେତେବେଳେ ଉଠି ମୁହିଁ ପଖାଳି ଶରୀର,
ଫେରି ଆସିଥାନ୍ତି, ପାଦ ବେଗେ ଚର ଚର ।
ପାହାନ୍ତ ଶୀତଳ ସୁଧା ଜୀବନ୍ତ ପବନେ
କହିଥାନ୍ତି ମନ କଥା ମଧୁ ଆଳାପନେ ।

ନୂରଅନା କୁଞ୍ଜେ ବୁଲି, ତମାଳର କୋଳେ,
ଗାଇଥାନ୍ତି ହୃଦ ଗୀତ ମୃଦୁ ମନ୍ଦ ସ୍ୱରେ ।
ନୟନ ନିମିଷେ ମୋର ଅଙ୍ଗଚଟି ଆଣି,
ହାଦ ଶ୍ୱାସେ ଦେଇଥାନ୍ତି ସରସେ ମେଲାଣି

ଗତ ଜୀବନର ସ୍ୱପ୍ନ ସ୍ମୃତି ଅବହେଳେ,
ପ୍ରଣମି ଆଆତ୍ମ ପ୍ରେମେ ବନ୍ଧୁ ଶ୍ରୀପଦ୍ମରେ ।

ନ ହେଲା ନ ହେଲା; ଆଜ ଦିନଟି ବିଫଳ,
ଏ ଯେ ସୂର୍ଯ୍ୟ ଢଳିଁଲାଣି ବହୁଛି ଉତ୍ତର ।
କାନ୍ଦିଗଲି, ବନ୍ଧୁ ଆଜ ନଦେଲ ଜଠାଇ,
ଶଯ୍ୟାରେ ମୋ ଗ୍ରତ କଥା ମନେ ମୋର ନାହିଁ ।
ମୋ ନିଜକୁ ନିରନ୍ତର ଯାଏ ମୁଁ ପାସୋରି,
ଗ୍ଭଲିଲା ବେଳକୁ ଠିଆ ହୁଏ ଥକା ମାରି ।
ଗ୍ଭଲେ ପୁଣି ଯେବେ ମୋର ଠିଆ ହେବା ବେଳ,
ମୋ ନିଜ ପସ୍ରଣ ମୋତେ ଅତି ଅସମ୍ଭାଳ ।

ଏକା ମୁହିଁ ଏ ସଂସାରେ ପାଇବି କି ରକ୍ଷା,
ଏ ଜୀବନ ସାଗ୍ର ମୁଣ୍ଡେ ଏକାକୀ ଟି ବନ୍ଧୁ ?
ତୁମେ ଯେବେ ପାଖେ ପାଖେ ଜଗିଥିବ ମୋର,
ବ୍ୟର୍ଥ ଯିବା ନେକେ ନିଧି ପାଇବି ଆଦର ।

ଏକାକୀ ଏ ପ୍ରାଣ ଲୁଣ୍ଠା ତୁଷ ରୁ ମୋ ପ୍ରାଣ,
ବିଶ୍ୱ ବସାରେଣ କାହିଁ ହୋଇଯିବ ଲୀନ ।
ସେତେବେଳେ ଖୋଜି ଖୋଜି, ଏଣେ ତେଣେ ଧାଇଁ
ମୋ ନିଜ ଚିହ୍ନକ ମୁହିଁ ନପାରିବି ପାଇ ।
ସାଜୁଥିବ ଦେଲ କର୍ମୀ ଅକାଳେ ମେଳାଣି,
କର୍ମୀ ନ ଦେଖିଲି ନିତି ପାଟେଶ ମୋର ଆଣି ।
ନଯାଅ ନଯାଅ, ବନ୍ଧୁ, ଛାଡ଼ି ମୋତେ କ୍ଷଣେ,
ମୋ ନିଜ ବଳ ହେ ନିତ, ତୁମେ ମୋର ଜାଣେ ।

# ପାଦତଳେ

ଧୀରେ ସନ ସନେ          ଆସଇ ସମୀର
କାନନେ ପ୍ରାନ୍ତରେ ବହି,
ଉପବନେ ଯାଏ          ଚରୁଲତା ଅଙ୍ଗ
ମଧୁର ପରଶେ ଛୁଇଁ ।

କେତେ ଶ୍ୟାମ ଟଣୋଦା          ମୃଦୁ ଖାଡ଼ ମେଲେ
ପରଶ ସୋହାଗେ ଢାଳି,
ଡାଳେ ଡାଳେ ଆହା          ପଲ୍ଲବ ନିକର
କରନ୍ତି କେସନ କେଳି !

କୁସୁମ କେଶର          ମଧୁ ଆହରଣେ
ଭ୍ରମର ପୀୟୂଷପାୟୀ,
ଉଳି ଉଳି ଖେଳେ,          ପସ୍ୱଣ ବାରତା
ଗୁଣୁ ଗୁଣୁ ଗୁଣୁ ଗାଇ ।

ଆଶା ଅଛି, ଦିନେ          ବସନ୍ତ ରସିକ
ପିକ ବସି ସେ ଉହଳେ,
ସରଗ ଝଟଣୀ          ସୁଧା କଣ୍ଠୁ ଧାର
ଢାଳିଦେବ ମହୀତଳେ ।

ଭୁଲି,ରେ ଅଭଗା                    ସେ ପୁଣ୍ୟ ମେଳାପେ
ଝଡ଼ର ସରଗ ତେଜେ,
ନିମିଷେ ଆବର                    ମୂରୁଛି ସକଳ
ପଡ଼ିଲୁ ଏ ଧୂଳି ଶେଯେ ।

ତନୁ ଢାଳେ ଚୋରେ                    ସେନେହ ସଙ୍କୋଚେ
ଧୀରେ ପରଶନ୍ତି ଯାଇ
ଧୂଳି ଶେଯେ ଏବେ                    ପାଦ ତଳେ ଆହା
ମାଡ଼ି ଦେଲେ ଯିବ ମୁହିଁ ।

ପଡ଼ିଅଛୁ ଯେବେ                    ତନୁଡାଳେ ଢଳ
ସୁଖେ ଚୋ ଖେଳିବା ଚେଜି,
ତନୁ ତଳେ, ଫୁଲ,                    ପଡ଼ ରେ ଆଦର
ଏ ଧୂଳି.ଶେଯ ବରଜି ।

ସେ ସଖା ମେଳାପେ                    ସୁଖେ ଖେଳିବାର
ଦେଲନାହିଁ ଯେବେ ଆଜି,
ଏ ମର ସଂସାରୁ                    ଚିର ଲାଗି ଆଜି
ଲୁଚ ଚୋ ସ୍ୱରୂପ ଯାଇ ।

# ଏକାନ୍ତେ

ଏକାନ୍ତେ ବସିଛି ନାରୀ ବଦନନ୍ତ ଢାଙ୍କଇ,
ନୟନୁ ଲୋତକଧାରା ବହେ ଝରଝର;
କେବେ କେବେ ପଦେ ଅଧେ କହୁଅଛି କଥା,
ବାକ ଯାକ କରେ ପୂର୍ଣ୍ଣ ତାର ନୀରବତା ।

ମୁଁ ପୁଣି ଏକାକୀ ପାନ୍ଥ ସୁଦୂର ବନସ୍ତେ,
ସାଥୀ ସାଥି ଲୋଡେ ମୋର ସେ ବିଜନ ପଥେ ।
ଏକେ ମୂର୍ଖ ବାଟ ବଣା, ଆକୁଳ ଦୋସର;
କାନ୍ଦି ଯାଏ, କି ଧିଆନେ, ନୁହଇ ଗୋଚର ।

ଦେଖିଲି ଏକାନ୍ତେ ବସି କାନ୍ଦଇ ରମଣୀ;
ସ୍ପନ୍ଦନୁ ଅଧିକ ତାର ନୀରବ ଗୃହାଣୀ ।
ଲୋତକେ ଲୋତକ ଝରେ ତିନ୍ତିଲା ନୟନ;
ମନର ବେଦନା ଦେଲେ ବୁଝିବ କି ମନ ?
ରମଣୀ ଝୁରଇ ବସି ଆକୁଳ ପରାଣେ,
ଅନାଇଁ ମୁଁ ରହିଥାଏ ଚାପିତ ଧିଆନେ ।

କେହ୍ନ ନ ବୁଝଇ ହେଲେ କାହା ହୃଦ ତ୍ରାସ,
କେନ ଜନ ନେହୂ ଯାଏ ବହ୍ନ ଅଶ୍ରୁ ଶ୍ୱାସ ।
କେତେବେଳେ ପଗ୍ୱଣୁ ମୋ ଅନ୍ତ ଅତର୍କିତେ,
ବନ୍ଧୁ ସ୍ନେହ ଦୀର୍ଘଶ୍ୱାସ ଗଲଣି ଭୁଲରେ ।
ନ ବୁଝିଲି ନାଶ ତାହୁଁ ନ ପାରିଲି କଳ
ଦେଖିଲି, ବଦଳିଲ ରଙ୍ଗ ପିନ୍ଧିଲାରୁ ବଳ ।
ନେତ୍ରପୁଟରେ ଆସିଗଲା ଜ୍ୟୋତି ଅକଳନ,
ହୃଦୟୁ ହରଷଧାର ଖେଳେ ଘନ ଘନ ।
ହସିତ ବଦନେ ମୋର ଅନାଇ ସେ ବାରେ,
ଫେରି ତାହୁଁ ଲୁଚିଗଲା ବିପିନ ଉଢ଼ାଳେ ।
ଖୋଜ ନାହିଁ, ଖୋଜିଥିଲେ ନଥାନ୍ତି ମୁଁ ପାଇ;
ସେତ ନଷ୍ଟ ରହିଥିବ ବହୁଦୂରେ ଯାଇ ।
ଗମ୍ଭୀର ବଦନେ ମୁହିଁ ହେଲି ମାତ୍ର ଠିଆ,
ବଞ୍ଚିତ ସେ ସିନା, ମୋର ପୂରିଗଲା ହିଆ ।

ଦିନେ ଭ୍ରମେ ସାଙ୍ଗେ ଛାଡ଼ି ଭ୍ରମଣ ଏକାକୀ,
ଭ୍ରମି ଭ୍ରମି ବହୁପଥ ପାଦ ଯାଏ ଥକି ।
ଆଜ ଖଣ୍ଡେ ଦୂର ଗଲି ଦେଖଇ ନୟତ,
ଶ୍ୟାମଳ ପ୍ରାନ୍ତର ଶୋଭା ତଟିନୀ ସୈକତ ।
ଜଳ ବେଣୁତାନେ ମିଶି ଖେଳଇ ତରୁସ୍ୱନ,
କି ସୁଧା ସଙ୍ଗୀତେ ଭରେ ବସୁଧା ଗଗନ,
କନକ କୁସୁମ, କୁହିଁ ପଲ୍ଲବ ଗହଣେ,
ଦେଖଇ ବଦନ ଶୋଭା ସଲିଳ ଦର୍ପଣେ ।

ସେ ବେଳେ ଉଦାସ ମନେ ଧୀରେ ବୁଲିବାର,
ପରିଚିତ ସେ ନାରୀଟି ଭେଟିଲି ଆବର ।
କାନନ ନିକୁଞ୍ଜ ଶୋଭା କୁସୁମ ମାଧୁରୀ
.ଖେଳେ ଯେବେ ତାର ସ୍ୱଚ୍ଛ ପ୍ରତିଫଳେ ତଳ,
କେଶର ପରାଗ ସୁଧା ସୁବାସେ ଧଳିତ
ସମୀରେ ଉଚ୍ଛୁଳି ଉଠେ ସୀମନ୍ତିନୀ ଚିତ୍ତ ।
ଅନାଇଁ ରହିଲି ମୁଗ୍ଧି ନୀରବ ଧିଆନେ,
ସେ ନାରୀ ନିସର୍ଗ କ୍ରୀଡ଼ା ସମ୍ପାଦ ଦରଶଣେ ।

ସେତିକି ମୋ ଦେଖା ନାରୀ ସଙ୍ଗରେ ସେଦିନ;
ଆଉ ଥରେ ଭେଟ ଭବେ ନୋହିବ ସେସନ ।
ମୋ ଜୀବନ ଗଢ଼ା ଯେଣୁ ଦୁଃଖ ଯାନତାରେ,
ମୋ ଚିତ୍ତ ଭାସଇ ଭବ ଦୁଃଖ ପାରାବାରେ ।
ସେହି ମୋ ସମ୍ପଦ, ସେ ମୋ ହୃଦ ସ୍ପର୍ଶମଣି;
ତହିଁ ମୁଁ ହୋଇଛି ପରା କୁବେରରୁ ଧନୀ ।
ସେ ଧନର ନାହିଁ ଲବେ ପାର୍ଥିବ ଗୁରୁତା,
ସେ ଧନେ ନୁହେଁ ମୁଁ ତିଳେ ଧରା ସହ ଗୁହା
ଜଗତ ଯାବତ ଦୁଃଖ ବହ୍ନି ହୃଦ ପୀଠେ,
ତେଣୁ ମୁଁ ପାରଇ ଉଡ଼ି ବିହଗ ସହିତେ ।
ହୃଦୁ ହୃଦନିଧି ପଲ୍ଲେ ପଡ଼ିଯିବ ଖସି,
ପରଶେ କନକ ଭ୍ରମ କେ ବହିବ ହସି ?
କେ ସହିବ ସେନେହର ହୃଦ ନିଯାତନ,
ବିଜନ ସମ୍ଭୋଗେ ବିତ ପାରିଲେ ଜୀବନ ?

# କିଶୋର କବି

ଆପଣା କବିତା ପାଠେ ମୁଗ୍‌ଧ କବିବର
ପୁଚ୍ଛନ୍ତି ବିଷାଦ କୋପେ ଅତି ଜର ଜର—
"ହୃଦ କି କରିଛ, ସଖା, ପାଷାଣୁ ନୀରସ,
ନିତି ମୋ କବିତା ପଢ଼ି ବାଛୁଥାଅ ଦୋଷ ?"

ସେତେବେଳେ ବିନୟେ ସଖା କରଇ ଉତ୍ତର,—
"କ୍ଷମା କଥାରେ ମିଛେ ଏତେ ଭାବନା ତୁମର
କବିତା ନାହିଁ ମୁଁ ବୁଝେ; ଜାଣିଥିବ ସତ,
ମୁ ଯାହା କହଇ ଖାଲି ଅପରଙ୍କ ମତ ।"



# ରଖିଥିବ ଚିତ୍ତେ

ପରାଣ ସୋଦର ଆହେ, ହୃଦୟ ପ୍ରତିମା,
ଜୀବନେ ମୋ ଚିରନ୍ତନ ଅଳି—
କରମ ବିପାକେ ନିତି, ଦୁଃଖ ବଇଭବେ
ହୃଦ କୋଣେ ରଖିଥିବ ଧରି ।
କିଅଛି ମରତେ ମୋର ସୋହାଗ ସମ୍ପଦ
ଯାହା ତୁମେ ଦେଇନାହିଁ ମୋରେ ?
ରୋଗ ଶୋକ ପରିତାପେ ନିର୍ନିଦ୍ର ନୟନେ
ବାନ୍ଧିଛ ହେ ପ୍ରୀତି ସୁଧା ଡୋରେ ।
ଜୀବନ କଲୁଷ ପଙ୍କୁ ଟାଣିଛ ଯତନେ,
ଢାଳି ହୃଦ ପୀୟୂଷ ଆସାର;
ଆପଦ ଆତଙ୍କେ ସଦା ହୋଇଅଛ ସାଥି
ସନ୍ତରଣେ ଭବ ପାରାବାର ।
କେତେ ଦିନ କେତେମନ୍ତେ ନିଶୀଥ ବିହାରେ
ତୁମ ସଙ୍ଗେ ବସିଛି ଧିଆନେ;
କେତେ ସୁଖ ଦୁଃଖ ସ୍ମୃତି ଜଡ଼ିତ, ସୋଦର,
ତୁମ ମୋର ଯୁଗଳ ପରାଣେ ।
ବାଲ୍ୟର ବୟସ କଥା ଯେତେ ଏ ଜୀବନେ
କେତେ ଦୂରେ ରହିଛି ସକଳ;

ଚିତ୍ତ ମଧ୍ୟେ ଅଯତନେ ଅମର ବିକାଶେ
ତୁମ ସ୍ମୃତି ଲେଖେ ଅବିରଳ ।
ମରଣ ନିଗଡ଼େ ପଡ଼ି ଅବଶେ ବିପାକେ
ଘାରି ଯେବେ ହେଲି ମୁଁ ବିକଳେ,.
ଜୀବନ ଶରଣ ମଧୁ ସୋହାଗେ ସେଦିନ
ଢାଳି ମୁଖେ ଦେଲ ତ ଚଞ୍ଚଳେ ।
କେତେ କେତେ ସ୍ମୃତି ମଧ୍ୟେ ଏ କଥା ଗୋଟିକ
ହୃଦେ ମୋର ରହିଛି ଅଙ୍କିତ,
ଜୀବନେ ମରଣେ କେବେ ପାରିବି ବିସୋରି,
କି ସମ୍ପଦେ କରିବି ପାଳଟ ?
ଅନୁଜ ସେନେହ ଭରେ ହୃଦ ପୀଠେ ନେଇ,
ଅଗ୍ରଜ ହେ, ରଖିଛ ଆଗ୍ରହେ;
ଏତେ ସୁଖ ସଉରଭ ଦିସ୍ୱାର ପାତର
ହେଲି ସିନା ତୁମ ଅନୁଗ୍ରହେ ।
ଜୀବନ ଯୌବନ କ୍ରୀଡ଼ା ସମ୍ପାଦ ପୁଲକେ,
ଆଜ ଏବେ କରମ ନିଦେଶେ,
ସାଧନା ବେଦୀରେ ବେନି ଚରଣ ନିବେଶି,
ମିଶାମିଶି କୋମଳ ପରଶେ ।
ସେନେହ ସୋଦର ବାଣୀ ସୁଖେ ଅନୁସରି,
ନତ ବନ ଭ୍ରମିଛି ଯେ ପଥେ,
ଆଜ ମଧ୍ୟ ସେହିଠାବେ ରହିଛି ଅନାଇ;
ଅଗ୍ରଜ ହେ, ରଖିଥିବ ଚିତ୍ତେ ।

## ନୂତନ ଓଡ଼ିଶାର ସଭ୍ୟ ପରିବାର *

ନବ ରାଜଧାନୀ ଏବେ ପ୍ରାସାଦେ ଶୋଭନ
ଇତିହାସ ଗର୍ଭେ ଲୁପ୍ତ ଏକାମ୍ର କାନନ ।
ଉତ୍ସଙ୍ଗେ ଥିଲା ସେ ଚାରି ମକା ବାଡ଼ି ଗୋଟି,
ଫଳ ଭରେ ଗଛ ତଳେ ଯାଉଥିଲେ ଲୋଟି ;
ମକାରେ ସବୁଁ ମୋ ଥାଏ ଶରଧା କଷ୍ଟରେ,
ଯାଇ ତହିଁ ପ୍ରବେଶିଲି ବନେ ପ୍ରତ୍ୟାଶିରେ ।
ଭାବିଲି, ନିଶ୍ଚୟ ଦେଉଥିବେ ତ ମାଗଣା,
ବଡ଼ଘର ଜନ ସର୍ବ, ସମୁନ୍ନତମନା ।
ସରମ ନିରୋଧି ମକା ମାଗିଲି ମୁଁ ଏକ;
ନମଣିଲ ତଳେ, ହାନି ଲଭିବ ମୋ ଟେକ ।

---

* କବି ୧୯୩୨ ମସିହାରେ ବିହାର ଓଡ଼ିଶା ବ୍ୟବସ୍ଥା ସଭାରେ ଯୋଗ ଦେବାକୁ ରାଞ୍ଚି ଯାଇଥିଲେ । ତାର ଶରତ୍କାଳୀନ ବୈଠକ ରାଞ୍ଚିରେ ବସେ । ଶ୍ରୀ ନକୃଷ୍ଣ କିଶୋର ଦାସ, ଶ୍ରୀ ରାଧାରଞ୍ଜନ ଦାସ ଓ ଶ୍ରୀ ଜଗନ୍ନାଥ ଦାସ ମଧ୍ୟ ସେ ବ୍ୟବସ୍ଥା ସଭାର ସଭ୍ୟ ଥିଲେ । ସେମାନଙ୍କ ସହିତ କବିଙ୍କର ଗାଢ଼ ବନ୍ଧୁତା ଥିଲା । ଏ ପଦ୍ୟର ତିନି ସଙ୍ଗୀ ସେମାନେହିଁ ହୋଇଥିବେ । କବି ସେମାନଙ୍କୁ ନିଜ ସରଳ ଢଙ୍ଗରେ କେତେକ ପରିମାଣରେ ପ୍ରଭାବିତ କରି ପାରିଥିଲେ ।

ଥିଲା ଉଭୟ ନାରୀ, ଶୁଣି କରଦେଲା ନାହିଁ,
ପଶିଗଲା ସୌଧେ ଭୟ ବଦନ ବୁଲାଇ ।
ସଙ୍ଗୀ ମୋର ସଙ୍ଗେ ସଙ୍ଗେ କ୍ରୋଧ ଜର ଜର,
କି ଅବା କହନ୍ତେ, ସେଣୁ ସ୍ୱଭାବେ ମୁଖର ।
ଦ୍ରୁତପଦେ ଯେନ ତାଙ୍କୁ ବାହୁଡ଼ିଲି ପଥେ,
ଭର୍ତ୍ସିଲି କି ଭ୍ରମେ ମୁଁ ପଡ଼ିଗଲି ସତେ ।
ରୂପେ କି ସୁନ୍ଦରୀ ନାରୀ, ବେଶ ଅନୁପମ,
ଦେଖନ୍ତେ ଝଲସେ ନେତ୍ର ତୃଷ୍ଣା ହୁଏ ମନ ।
ଦ୍ୱାରୁ ପଳାଇଲା ଯେହ୍ନେ ଲକ୍ଷ୍ମୀ ରୁଷ୍ଟ ମତି,
ନ ଗଣିଲା ହୃଦେ ମୋର କି ହୋଇବ ଗତି ।
ବାଇଶ ବରଷ ତଳ ସ୍ମୃତି ମୋ ଅନ୍ତରେ,
ଢେଇଁ ଖରେ ଆସି କାହିଁ ନାଚିଗଲା ଥରେ ।

ସୁଦୂର ପ୍ରବାସେ ଗଞ୍ଜ ନଗରୀ ଉପାନ୍ତେ,
ତିନି ସଙ୍ଗୀ ସହ ଦିନେ ବୁଲୁଥିଲି ପ୍ରାତେ ।
ଶରତ ପ୍ରଭାତ ଶୋଭା ଫୁଟି ଚଉପାଶେ;
ସ୍ୱରଗ ସମ୍ପଦ ଝଳେ ଅବନୀ ଆକାଶେ ।
ବାଟେ ଏକ ମକା ଖେତ ଫୁଲ ଫଳେ ଭରା,
ତା ଶ୍ରେଷ୍ଠ ସମ୍ଭାର ସତେ ବାଢ଼ିଅଛି ଧରା ।
ଓରାଙ୍ଗ ଯୁବତୀ ଗୋଟି, ଏକା ତହିଁ ବସି,
ସୂତା ହାତେ କାଟେ, ଗୀତ ଗାଉଅଛି ହସି ।
ସେ ଶରତ ଶ୍ରୀ ମଧ୍ୟେ ସେ କି ଏକ ଶ୍ରୀ,
ବିଭବେ ଟପଇ ସାରା ବନ ନଦୀ ଗିରି ।

ସ୍ୱର ସଙ୍ଗୀ ଯାଇ ମକା ମାଗିବାରେ ଚାଲୁ,
ଦେଲ ଅନୁମତି ଭ୍ରସ ନିଜେ ଚୋଳବାକୁ ।
· କହି, ତା କାମେ ସେ ପୁଣି ଲଗିଲ ଉଦାସେ;
ନ ସ୍ୱଇଁଲ ଖେତ କେତେ ଜୁର ହୁଏ ପାଣେ ।
ସ୍ୱର ସଙ୍ଗୀ ଦଣ୍ଡ କେତେ ବୁଲି ଦେଖି ଖେତ,
ସୁକୃତି ସୁଦତ୍ତ ଧନେ ପୂର୍ଣ୍ଣ କଲୁ ନେତ ।
ଶେଷେ ଏକ ମକା ଧରି ଫେରନ୍ତେ ବାହାରେ,
କ ଭାବିଲ ସୁବର୍ଣ୍ଣ ସେ ଅନାଇଲ ତାଳେ ।
ଆମ ଧନ୍ୟବାଦ ବାଣୀ କ ଶୁଣିବ କାନେ;
ହସି ହସି ଗଡ଼ଗଲ, ତା ହେଲୁ ସେ ଜାଣେ ।
ଚକିଂତେ ସ୍ୱଇଁକୁ ଆମେ ଉଭ ସ୍ୱର ସଙ୍ଗୀ,
କ ବୁଝିବୁ ସେ ଓସଙ୍ଗ ସୁବର୍ଣ୍ଣର ଭଙ୍ଗୀ ?

ହସ ଶେଷେ ସେଧି, ବାଳା କହେ ମୃଷେ ବାଣୀ,
"ସ୍ୱରଷ୍ଠା ମରଦେ ଏକ ମକା ଅଛ ଆଣି !
ଏ ମୋ ନିଜ ଖେତ, ପର ଖେତରୁ ଅଲଗା,
ମୁଁ ହାତେ କମଣ ସ୍ୱାର କରେ, ରଖା ଜଗା ।
ଜଣକେ ପଣେ ବା ନେଲେ କ ହୁଅନ୍ତା ଦୋଷ,
ଗୋଷ୍ଟିକେ ସ୍ୱରହେଁ କେହ୍ନେ ଲଭିଲ ସ୍ରନ୍ତୋଷ ?"
କହି, ବାଳା ଆଜଥରେ ହସି ଗଲ ଲେଟି;
ଚୋଳଅଣି ଦେଲ ବାକ ଟିହ୍ନିଙ୍କ ତନୋଟି ।

ସେଦିନ ଏକାମ୍ର ବନେ ସୁମରି ସେ କଥା,
ବନବାସୀ ଆହା କେତେ ନ ଲଭିଛି ବ୍ୟଥା ।
ପୁନର୍ଜନ୍ମେ ପ୍ରତ୍ୟୟ ମୁଁ ଥାପନ୍ତୁ ଅନ୍ତରେ,
ମରି ଜନ୍ମି ପାରେ ଯଦି ଆଦିବାସୀ ଘରେ ।
ହେଉ ସେ ଓରାଙ୍ଗ, କନ୍ଧ, ଶବର, ସାନ୍ତାଳ,
କି ବାଣ୍ଟିବ, ନୁହେଁ ଯେବେ ସଭ୍ୟ ପରିବାର
ସଭ୍ୟତା ଗ୍ରାସଇ ମୋଡ଼ି ମନୁଷ୍ୟତା ବେକ,
ଯେତେ ଉଚେ ଗଢ଼ୁ ମର୍ତ୍ତ୍ୟେ ମାନବ ତା ଟେକ ।



# ଅଭୟ ଆଦେଶ *

"ଏତିକି ଲାଞ୍ଛନା ଏବେ ନାରୀର ଜଗତେ,
ନାରୀର କପାଳେ ଏବେ ଲେଖିଅଛି ସତେ ।"
ତେବେ, ସୀମନ୍ତିନୀ ନେତ୍ରୁ ଢାଳେ ଅବିରଳ,
ଜାହ୍ନବୀ ବିଶାଳ ଧାର, ଅବଳା ସମ୍ବଳ ।
ଓଢ଼ଣୀ ଉଢ଼ାଳୁ ଅଳ୍ପ ଦିଶେ ଚନ୍ଦ୍ରମୁଖ,
ନ ଥାଆନ୍ତା ଛୁଇଁ ଆହା ଏ ପରାଣ ଦୁଃଖ ।
ପାଣ୍ଡୁର କପୋଳ ଉପର ବହିଅଛି ପାଣି,
ସେ କି ନାରୀ, ଅବା ଶବ ପିନ୍ଧିଲା କେଜାଣି ।

ପ୍ରଭାତେ ନ ଉଠୁଁ ଶେଯୁଁ ଶାଶୁ ଭର୍ତ୍ସଣାର,
ସେ ତ ସାଥି ଲାଗିଥିଲା ଗୃହର ଜଞ୍ଜାଳ ।
ସେଥିପାଇଁ ଫେଇ ଦ୍ୱାର ଆସିଲା ବାଢ଼କ
ଲିପି ପୋଛି ସଫା କରି ରଖିବ ସେ ନକ ।
ନୂଆ ହୋଇ ନବବଧୂ ଆସିଅଛି ଘରେ,
ସମର୍ପିଛି ଜୀବନ ଶାଶୁ ଗିରସ୍ତ ପଦରେ ।

ସେ ତ ଲାଗିଥିଲା କାମେ ଢାଳି ମନପ୍ରାଣ,
ଶୁଣିଲା, ଲଳିତ କଣ୍ଠେ ଗାଉଛନ୍ତି କେ ଗାନ ।

---

* ୧୯୫୧ ମସିହାରେ କବି ନିଜ ନିର୍ବାଚନମଣ୍ଡଳୀରେ ଭୋଟପ୍ରାର୍ଥୀର ପାଇଁ ବୁଲିବା ସମୟରେ ଲେଖା ହୋଇଥିଲା । କବିଙ୍କ ଅଶ୍ୱାସନା ଫଳରେ ନାରୀ ଟଙ୍ଗୋଦେବଙ୍କର ଅତ୍ରସ୍ତ ନେଇ ନଥିଲେ ଓ ସ୍ୱାମୀ ସ୍ତ୍ରୀ ମିଳିମିଶି ରହୁଥିଲେ ।

ଗାଇ ଚାଲିଯାଏ ପଥେ ଯୁବା ନାଗରିକ,
କଣ୍ଠ ମାଧୁରୀକି ବଳି ରୂପ ତା ଅଧିକ ।
ଠିଆ ହେଲା ତନ୍ୱୀ ବାଳା ଏକଇ ଧିଆନେ
ବହି ଆସେ ଗୀତ ଧାର ଶୁଣୁଛି ସେ କାନେ ।

ବେଳେବେଳେ ଆସି ସ୍ୱାମୀ ପ୍ରତିବେଶିଛି ତାର,
କହିଲା ଗରଜି, "ନାରି, ଏ କି ତୋ ବେଭାର ?"
ପ୍ରହାରିଲା ତାକୁ ପଦ ପଶୁର ପରାୟେ,
ନାଲି ଚିହ୍ନ ବସିଗଲା ତା ସୁବର୍ଣ୍ଣ କାୟେ ।
ଗୋଳ ଶୁଣି ଶାଶୁ ଆସି ପ୍ରବେଶିଲା ତହିଁ,
ପ୍ରବୋଧନା ଦେବ ଅବା 'ଆହା ଆହା' କହି ।
ସେତ କଲା ବିପରୀତ, ନୁହେଁ କି ସେ ନାରୀ,
ପୁଅଠୁଁ ଦ୍ୱିଗୁଣ ବଳି ଦେଲା ମାଡ଼ ଗାଳି ।

ତଳେ ପଡ଼ିଗଲା ବାଳା ଅଙ୍ଗେ ଧୂଳି ଲୁହେ,
ଗଛଡାଳ ଚମ୍ପାଫୁଲ ଲୋଟେ କି ବାହୁଏ ?
ମାଟି ପୁଅ ମାଆ ଯେବେ ଥକିଗଲେ ଅତ,
କହିଲେ, "ଯା ଚଣ୍ଡାଳୁଣି, ସେ ଚଣ୍ଡାଳ କତ ।"
ବନ୍ଦି ଦ୍ୱାର କରି ବେନ ପଶିଲେ ଆବାସେ,
ବସିଲା ବିଷାଦେ ବଧୂ ବାଡ଼କୂଅ ପାଶେ ।
କେତେ ସେ କାନ୍ଦିଲା ଥିବ ସେହୁ ଏକା ଜାଣି,
ପାଣ୍ଡୁର କପୋଳ ଝରି ବହିଅଛି ପାଣି ।
କହୁଛି, "ଏ ମର୍ତ୍ତ୍ୟେ ତ ନାହିଁ ମୋ ଆଶ୍ରୟ,
କୂଅ ମଧ୍ୟେ ଗଙ୍ଗାଦେବୀ ଦେବେ ବା ଅଭୟ ।"

# ପିଞ୍ଜରାବଦ୍ଧ ପିକ *

ଯୁଗଳ ଅନ୍ତରେ ପୁଣି ବାଣୀ ବିମୋହନ,
ଶୁଣିଲି ନିମିଷ ପ୍ରତେ, ଚପଳା ଯେସନ ।
ଜନତା ନିନାଦ ଭେଦି, ଏ ପୁର ପ୍ରବାସେ,
ଯାହା କଣ୍ଠ ସ୍ୱର ଆହା ଭାସି କାହୁଁ ଆସେ ।
ବନ୍ୟ ବନେ ଉଡ଼ି ଉଡ଼ି ଗାଇନ୍ତି ଗାଇଲେ;
ସରସେ ବରଷିବାର ସୁଧା ଅବହେଳେ ।
ଲେଶ ତ ନଥିଲା ଏବେ ଉଦାସ ପରାଣେ,
ଶୁଣିବି ଶ୍ରବଣେ ବୋଲି ଏ ଶିଳାଭବନେ ।
ଯେବଣ ଗାଇକେ ଯନ୍ତ୍ରେ ଧାବତ ବେଗର,
ତନ୍ତୁଁ ବଳ ମିଳେ କବା କଣିକା ମାତର ?
କି କାରଣେ ବସି ପିକ ଚରଣ ଶୃଙ୍ଖଳେ,
ପଞ୍ଜୁରି ଭିତରୁ ସୁଧା ଢାଳୁ ଅବହେଳେ ?
ମନେ କି ରଖିନ୍ତୁ ଯେତେ ଅତୀତ ବିଭବ—
ଶ୍ୟାମଳ ଦ୍ରୁମିନ ଉର୍ଦ୍ଧ୍ୱେ ଶୂନ୍ୟ ମାଳ ନଭ,

---

* କଲିକତାରେ କେହ୍ନ କେହ୍ନ ଘରେ କୋଇଲି ପୋଷିଥାନ୍ତି । ବସନ୍ତଋତୁରେ ସ୍ୱଚ୍ଛନ୍ଦରେ ଉଡ଼ୁଥିବା କୋଇଲିଙ୍କ ପରି ସେମାନେ କୁହୁ ସ୍ୱରରେ ରାବନ୍ତି । ଦିନେ ଦିନେ ବିଜୁଳି ଆଲୋକରେ ଉଜ୍ଜ୍ୱଳ ରାତିରେ ଦିବସ ଭାବି ମଧ୍ୟ ରାବପକାନ୍ତି ।

ପଲ୍ଲବ ଗହଳେ ସୁଖେ ଲୁଚି ଚଢ଼ୁ ଡାଳେ,
କଣ୍ଠଧାରା ତାଳଦେବା ନିକୁଞ୍ଜ ଉତ୍ତାଳେ ?
ଏତେ ଏତେ ନିଧି ଆଜି କରି ସୁମରଣା,'
ପିଞ୍ଜରେ ଗାଉ କି, ପିକ, ପରାଣ ବାସନା ?

ତୁନି ହୁଅ, ତୁନି ହୁଅ, ରେ ପିଞ୍ଜର ବାସି,
ମୁରୁଛୁଛି ନନ୍ଦନ ଶୋଭା ବନ ଚତୁରାଶି ।
ଯେ ରାଇଜେ ଉପବନ ଶ୍ୟାମଳ ମୂରତି,
ପରାଣ ପାଟଳ ଖେଳେ, ଢଳଢଳ ଅତି,
ବିମଳ ନିର୍ଝରମାଳା ଧରି ଅପଘନେ,
ବିଶାଳ ଶଇଳ ଯହିଁ ବିହରେ ଗଗନେ,
ବିଳ ଚାଣେ ବୁଲି ବୁଲି ମୋହନ ସୋହାଗେ,
ଶରଦ ଚଟିମା ଯାଏ ବନ୍ଧୁ ଅନୁରାଗେ;
କନକ କୁସୁମ ପନ୍ତି ବିକଶି ଉଦାସେ,
ଝିଢ଼ନ୍ତି ଉଷତେ ଭୂଇଁ ବୁକୁ ପରବାସେ,
ସେ ସରଗ ଦେଶେ ଯେତେ ପିପାସିତ କାନେ,
ଢାଳିବା ଅମୃତ, ଭୁଲି ଉଦାସ ପରାଣେ,
ପିଞ୍ଜରେ ଗାଇବା, ପିକ, ମଣୁ କି ଉଚିତ ?
ତୁନି ହୁଅ, ତୁନି ହୁଅ, ହେଲଣି ବହୁତ ।



# ଅଙ୍କା ମନ ଚାଲ୍ ଯିବା

ଖରାଦିନ ଖରାବେଳେ ବାଟପାଖେ ଏକାଟି,
ରୋଗ ତାପେ ଥର ଥର ଶୋଇଅଛି ବୁଢ଼ାଟି ।
'ଧରି ଧରି', ଡାକୁଅଛି, "ପ୍ରାଣ ଯାଉଛି ଉଡ଼ି;
ଛାଇ ତଳେ ନେଇ ମୋତେ ଦିଅ ଭୂଇଁରେ ଛାଡ଼ି ।
କେ ଯାଉଛ ବାଟେ, ଆହେ ସାଧୁ ବାଟୋଇ ଜନ,
ଶ୍ରୀହରି ଭଲେ ରଖିଥିବେ, ମୋର ମିନତି ଘେନ ।"

ଘୋଡ଼ା ଗାଡ଼ି ଚଢ଼ି ସୁଖେ, ମହା ଆଟୋପେ କାହିଁ
ଯାଉଥିଲେ ସୌଦାଗର ନିଜ ବଣିଜ ପାଇଁ ।
"ଦେଖ, କିଏ ଅଛ ଆରେ, କି ହୋଇଛି ବୁଢ଼ାର;
କାହିଁ ତାରେ ଛାଇତଳେ ନେଇ ଭୁଇଁରେ ଛାଡ଼ ।"
କଳଆର ଟାଣି, ଲହୁଁ ଗାଡ଼ିବାଳକ ତ୍ୱରା
ଗାଡ଼ି ଠିଆ କଲା ତହିଁ; ଶୋଇ ରହିଛି ବୁଢ଼ା ।
ଖରେ ବେନି ଜଗୁଆଳି ଗାଡ଼ି ପଛୁ ଓହ୍ଲାଇ,
"ଉଠ ବୁଢ଼ା", ଓଟାରନ୍ତି, "କହ, ଯିବୁ ତୁ କାହିଁ ?"

ମୁଖେ ଗୁଇଁ ଗୁଇଁ ଖଗ ମାରୁଅଛୁ ଚେପନେ,
ଅଙ୍ଗେ ବେଗ ମାଡ଼ି ଆସେ ବେତ୍ରୁ ବେଳ ସଘନେ ।
ଅକଟ ଅନାଇ ବୁଢ଼ା ପଡ଼ଗଲା ଦୋସର,
ହାତଠାରେ ଜଣାଇଲା ନାହିଁ ଲେଡ଼ା ପିବାର ।
ବେନ ଜଗୁଆଡେଲ ବେନ ନିର ବଚନ ଭାଷି,
ଗାଡ଼ି ପଛେ ନଜ ଥାନେ ଠିଆ ହୋଇଲେ ଆସି ।
ସଗ ଅପମାନେ ଚାଷ ଅର୍ଦ୍ଧ ଅସ୍ଫୁଟ ଗୀରେ
"ଚଲ ଗାଡ଼ି", ସୌଦାଗର ଦେଲେ ଆଦେଶ ଖରେ ।

ଘଡ଼ ଘଡ଼ ଗଲା ଗାଡ଼ି ଘୁଷ୍ଟ ପ୍ରହାରେ ଧାଇଁ,
ଗଲ ମୁଣ୍ଡେ ଅଦୃଶ୍ୟ ସେ ହେଲା ଦୂରତେ ଯାଇ ।
ହୋଇ ନୋହୁଛି କି ବୁଢ଼ା ଅବା ନମିଷେ ଲୁନ,
ଅଧରୁ ଭାଷିଲା ପୁଣି କ୍ଷୀଣ ବିକଳ ବାଣୀ;—
"କେ ଯାଉଛ ବାଟେ, ଆହେ ସାଧୁ ବାଟୋଇ ଜନ,
ପ୍ରଭୁ ଭଲେ ରଖିଥିବେ ମୋର ମିନତି ଘେନ ।"

ଶିବାଳୟେ ସୋମବାର ପୂଜା ବନ୍ଦିବା ଆଶେ,
ଯାଉଥିଲେ ବିଧବା ଯେ, ଶୁଦ୍ଧ ପବିତ୍ର ବାସେ ।
ଥୋଇ ଦେଲେ ନଇବେଦ୍ୟ କରଯୁଗୁଁ ଭୂତଳେ,
ଅଧ ଲାଜେ ବୁଢ଼ା ପାଶେ ଯାଇମିଳିଲେ ଖରେ ।
ବଦନ ଓଢ଼ଣାଟିକ ଟାଣି ଶଙ୍କିତେ ନାସା,
ବୁଢ଼ା ଅଙ୍ଗ ପରଶିଲେ ଲାଜ ସରମ ଗୁଡ଼ି ।
ସମ୍ପୂର୍ଣ୍ଣ ପରଶି ନାସା ଛନ୍ତ ଅବା କ ନାହିଁ;
ଚର ଚରେ ଉଠି ବୁଢ଼ା ହେଲା ଠିଆଟି ଚାହିଁ ।

ବଳ ଆସିଗଲା କବା କ୍ଷୀଣ ଦେହ ପଞ୍ଜରେ,
ନିଜେ ଯାଇ ଗୁଇଚଲେ ଜଙ୍ଘ ହୋଇଗଲା ହେଲେ ।

ନଇବେଦ୍ୟ ଥାଳୀ କରେ ଚୋଳ ଚନ୍ଦୁଁ ଯତନେ,
ଶିବାଳୟେ ଗଲେ ନାଗ୍ର ସେବା ଧ୍ୟାନ ପୂଜନେ ।
କାହୁଡ଼ ଦେଖନ୍ତି, ବୁଢ଼ା ଗୁଇ ଚଳେ ନବସି,
"ଥକା ମନ ଭୁଲ ସିବା", ଗାଉ ଅଛଇ ହସି ।
"ଚକା ନେହ ନରେଖିବା", କଣ୍ଠ ସଙ୍କୋଚ ସ୍ୱରେ,
ମିଶାଇ ନାଗ୍ରହି ଧୀରେ, ଗଲେ ଆପଣା ବାସେ ।



# ସାନ୍ଧ୍ୟତାରା

ପ୍ରତୀଚୀ ଭୂଧର ପଛେ ଲୁଚିଲେ ତପନ,
ସୁନ୍ଦର ପାଟଳେ ଶୋଭେ ବାରୁଣୀ ଗଗନ;
ତେବେ ତା ଶାନ୍ତ କପୋଳେ,
ତୁହି, ସାନ୍ଧ୍ୟତାରା, ଏକା ତାରକା ସଂସାରେ ।

ରବି ବୁଡ଼ିଗଲେ, ମର୍ତ୍ତ୍ୟେ ଘୋଟଇ ଅନ୍ଧାର;
ବୁଝାଉ ତୁ ଢାଳି ଜ୍ୟୋତି ଦୁଃଖ ଦୈନ୍ୟ ତାର;
ତୁହି ଅନ୍ତିମ ଭରସା,
ତୋ ବିନା ଏ ବିଶ୍ୱବାସୀ ଲଭନ୍ତା କି ଦଶା ?

ଦୀପାନ୍ୱିତ ନୁହେଁ ଖାଲି ଆକାଶ ତଳପ,
ନିସ୍ୱଣ ହୃଦୟେ ଆଶା ଜଗାଉ କଳପ,
ସଜ୍ ନିଶା ଦେଖା ହେଲେ,
ସୀମନ୍ତିନୀ ଶୁଭ ଟୀକା ସଜ କି ସମ୍ଭାରେ !

ପ୍ରକୃତି ଉଦ୍ୟାନେ ତୁ କି କମଳ କଳିକା ?
ଅବା କେଉଁ ଦେବତାର ନୟନ ଚନ୍ଦ୍ରିକା ?
କେଉଁ ସୁରନାଗ ମଣି ?
ଅବା କାହା ନେତ୍ର ତ୍ୟକ୍ତ ଅଶ୍ରୁ ବାରି କଣି ?

ଅବା ଢଳା ସୃଷ୍ଟି ଶୁଭ୍ର ଜଳ୍ପ ବେଣୀ ପାଶେ,
ତୁ ଏକ ନିଦବ ଧାଗ ଜହ୍ନକୁ ଆକାଶେ ?
କବା ସୁରାସୁର ଗଣ
ସମୁଦ୍ର ମନ୍ଥନ୍ ଚୋଟେ ପାଉଛନ୍ତି ଧନ ?

ଯାହା ତୁ ଦେଇଛ, ରେ ସାନ୍ଧ୍ୟତାରା, ଯହା ପ୍ରତି;
ତୁ ତ ମୋର ଏକମାତ୍ର ପରମ ସମ୍ପତ୍ତି;
ମୋର ନୀରସ ଜୀବନେ
ତୁ ଏକା ସଞ୍ଚାରୁ ରସ କଣିକା ଭଜନେ ।

ଜୀବନ୍ ଲଭିବ ଯେବେ ମୋ ସୁଖ ଆଲୋକ,
ବ୍ୟଥିତେ ବୁଝିବ ଶୂନ୍ୟେ ବନ୍ଧୁ ହେବେ ଶୋକ
ତେବେ ଆୟୁ ଶେଷ କ୍ଷଣେ
ତୁହି, ସାନ୍ଧ୍ୟ ତାରା, ଜଳି ପ୍ଲାବନୁ କରଣେ ।




ମୁଦ୍ରାକର—ଶ୍ରୀ ଦିବାକର ମିଶ୍ର, ଗୋସ୍ୱାମୀ ପ୍ରେସ, କଟକ—୨

